ନିଶୀଥ ସୂର୍ଯ୍ୟ
ଲେଖିକା :
ଶକୁନ୍ତଳା ପଣ୍ଡା
ପ୍ରକାଶକ :
ସୁଚରିତା ପବ୍ଲିକେଶନ୍ସ
୪୩୧, ଶହୀଦ ନଗର
ଭୁବନେଶ୍ୱର ୭୫୧୦୦୭
ପ୍ରଚ୍ଛଦ :
ଅତସୀ ବସୁ
ମୁଦ୍ରଣ :
ଜଗନ୍ନାଥ ପ୍ରସେସ୍
କଟକ-୨
ପ୍ରଥମ ପ୍ରକାଶ :
ଡ଼ିସେମ୍ବର, ୧୯୯୪
ମୂଲ୍ୟ :
ପଚାଶ ଟଙ୍କା ମାତ୍ର

NISEETHA SURYA
Written by:
**Sakuntala Panda**
Published by:
**Sucharita Publications**
First Edition: 1994
Printers:
**Jagannath Process**
Cuttack-2
Price:
**Rupees fifty only**

'ମୁଁ ତ ତୁମ ଝିଅ । ମୋତେ ମିଲୁ ଝିଅ କାହିଁକି କହୁଚ ?' କହୁଥିବା ମୋ ଝିଅ କୁନ୍‌ମାମି (ନେହା)କୁ ଏବଂ ମୋ କୋଳକୁ ଘୁଞ୍ଚିଆସି ମୋ ପିଲାଦିନର କଥା ଶୁଣିବା ପାଇଁ ଜିଦ୍ କରୁଥିବା ସାନ ଝିଅ ଟିକିକୁନୁ (ନୀତି) କୁ...

ଆମେ ଯିଏ କିଛି କହିବାକୁ ଚାହୁଁ, ଅଥଚ ସମସ୍ତଙ୍କୁ ସବୁ କଥା କହି ହୁଏ ନାହିଁ, ତା' ପ୍ରକାଶ ପାଏ ଆମ ଗଳ୍ପ ମାଧ୍ୟମରେ।

ସୁଖ ହେଉ ବା ଦୁଃଖ ହେଉ, ହସି ହସି ବିତିଯାଉଥିବା ମୁହୂର୍ତ୍ତ ମଧ୍ୟ ସ୍ମରଣୀୟ ହୁଏ ଲେଖନୀ ଦ୍ୱାରା।

ଗାଳ୍ପିକଟି ଏଭଳି ବ୍ୟକ୍ତି ନିଜ ମଧ୍ୟରେ କିଛି କଥା ସେ ଗୋପନ ରଖି ପାରେ ନାହିଁ, ସେ କହି ଦିଏ।

ତା'କୁ ସ୍ପର୍ଶ କରିଥିବା ବିଷୟ, ତା'ର ଅନୁଭବ ଯତ୍ନର ସହ ସେ ସାଇତି ରଖେ କିଛିଦିନ। ବିଚଳିତ ହୁଏ, କଷ୍ଟ ପାଏ, ଆନନ୍ଦିତ ହୁଏ ମଧ୍ୟ।

ବିଶ୍ୱରେ, ଦେଶରେ, ସମାଜରେ, ପରିବାରରେ ଏପରିକି ନିଜ ଜୀବନରେ ସମସ୍ୟାମାନଙ୍କୁ ନେଇ ତା' ମନରେ ସଂଘର୍ଷ ଚାଲିଥାଏ ଅହରହ।

କାହିଁକି ଏମିତି ? କ'ଣ କରାଯାଇପାରେ ? କିଏ ଏସବୁ ସହଜରେ ସମାଧାନ କରିଦିଅନ୍ତା କି ?

ଏ ମଧ୍ୟ ତା'ର ଭାବନା।

ସେ ଯେତେବେଳେ ପ୍ରଥମେ ଗଳ୍ପ ମାଧ୍ୟମରେ ଏସବୁ ସଂପର୍କରେ କିଛି କହିବାକୁ ଆରମ୍ଭ କରେ, ସେଇ ମୁହୂର୍ତ୍ତରୁ ତା'ର ଗାଳ୍ପିକ ସତ୍ତାଟି ଜନ୍ମନେଇ ସାରିଥାଏ।

କେହି ଦାୟିତ୍ୱ ନ ଦେଲେ ବି ସେ ଯେପରି ସଂସାରଯାକର ଦାୟିତ୍ୱ ନିଜ ମୁଣ୍ଡକୁ ଉଠାଇନିଏ !

ବିଶ୍ୱ ବ୍ରହ୍ମାଣ୍ଡରେ ପୃଥିବୀର ସ୍ଥିତି ବା କ'ଣ ? ମନୁଷ୍ୟ ତ କ୍ଷୁଦ୍ରାଦପି କ୍ଷୁଦ୍ର।

ଅଥଚ ତା'ର ଚିନ୍ତନ ସ୍ତର ସର୍ବବ୍ୟାପୀ ହୁଏ। ସେ ଉନ୍ମୁକ୍ତ ପକ୍ଷୀଟିଏ ଭଳି ତା'ର ଚେତନାରେ ସଂଗ୍ରହ କରି ନିଏ ସାରା ବିଶ୍ୱ ବ୍ରହ୍ମାଣ୍ଡ, ଗ୍ରହ, ନକ୍ଷତ୍ରର କଥା। ଏସବୁ ମଧ୍ୟରେ ଏହି ଗାଳ୍ପିକ ଲେଖକଟିର ବ୍ୟକ୍ତିସତ୍ତା ନିମଜ୍ଜିତ ରହି ଉନ୍ମତ୍ତପ୍ରାୟ ହୁଏ, ଅଥବା ସିଦ୍ଧି ଲାଭ କରିଥିବା ସନ୍ୟାସୀଟି ଭଳି କିଛି ବାର୍ତ୍ତା ଉପସ୍ଥାପିତ କରେ ସେ ତା'ର ଲେଖା ମାଧ୍ୟମରେ।

ଏସବୁ ଖୁବ୍ ବଡ଼କଥା କହିବା ଭଳି ମନେହେଲେ ମଧ୍ୟ ତା' ଆଦୌ ନୁହେଁ। ଗାଳ୍ପିକଟି ସେହି ସାଧାରଣ କଥା ହିଁ କହେ। ଅର୍ଥାତ୍ ଏହି ଗଳ୍ପ ସଂକଳନରେ 'ଜହ୍ନରାତିର ସ୍ୱପ୍ନ' ଗଳ୍ପରେ ଶ୍ୱେତା ତା' ଜୀବନରେ ଭେଟିଥିବା ମଣିଷମାନଙ୍କ ମନୋଭାବ ସଂପର୍କରେ ବ୍ୟକ୍ତ କରିଛି।

'ଅରଣ୍ୟ, ଆକାଶ ଓ ରାସ୍ତା ଖୋଜୁଥିବା ବିକ୍ରମ'ର ମୁଖ୍ୟ ଚରିତ୍ର ଚଉଦ, ପନ୍ଦର ବର୍ଷର କିଶୋର ଭିକି, ବିକ୍ରମକୁ ଦେଖିବା ପରେ ନିଜ ମନର ଯନ୍ତ୍ରଣା ମୁଁ ଅବ୍ୟକ୍ତ ରଖି ପାରି ନାହିଁ। ସେଇ ଭଳି 'ନିଶୀଥ ସୂର୍ଯ୍ୟ'ର ଅଳକାନନ୍ଦା ସବୁ ସତ୍ତ୍ୱେ ନିଜ ପାଇଁ ସୁଖ ଟିକିଏ ଖୋଜି ନେବାର ଚେଷ୍ଟା କରିଛି।

'ଆଲବମ୍‌ର ଫଟୋ' ଗଳ୍ପଟିର ପ୍ରଫେସର ଇନ୍ଦ୍ରନାଥ ଅବସର ନେବା ପରେ ଜୀବନକୁ ସହଜ ସୁନ୍ଦର ଭାବରେ ବିତାଇବାର ଯୋଜନା କରନ୍ତି।

ଏହି 'ଗଳ୍ପ ସଂକଳନଟିର ଏମିତି ଭାବରେ ପ୍ରତିଟି ଗଳ୍ପରେ ଦେଖା ଦେଇଥିବା ଚରିତ୍ରମାନଙ୍କ ସଂପର୍କରେ ମୁଁ ଆସିଛି, ମୋ ପାଖରେ ସେମାନେ 'ଅନ୍ୟ କେହି' ନ ହୋଇ 'ମୁଁ' ହୋଇଯାଇଛନ୍ତି। ଅର୍ଥାତ୍ ସେମାନଙ୍କର ସୁଖ, ଦୁଃଖ ମୋ ମଧ୍ୟରେ ଗୁନ୍ଥି ହୋଇ ରହିଛି। ସେମାନଙ୍କ ସ୍ୱରରେ କଥା କହିବାକୁ ମୁଁ ଆରମ୍ଭ କରିଛି। ସେମାନେ ମୋତେ ଯେପରି ବାଧ୍ୟ କରିଛନ୍ତି ସବୁ ଲିପିବଦ୍ଧ କରିବାକୁ।

ସେମାନେ ନା ମୁଁ? ନିଜକୁ ଏସବୁ ପଚାରିବାର ଆବଶ୍ୟକତା ମଣି ନାହିଁ। କାରଣ ମୁଁ ସେମାନଙ୍କୁ ନିଜର କରିଛି।

'ନିଶୀଥ ସୂର୍ଯ୍ୟ' ଗଳ୍ପ ପୁସ୍ତକଟି ପାଠକମାନଙ୍କ ହାତକୁ ବଢ଼ାଇ ଦେଇ ମୁଁ ଏତିକି କହିବି, ମୋ ଭଳି ଆପଣମାନେ ମଧ୍ୟ ସେମାନଙ୍କୁ ବୁଝନ୍ତୁ।

ଅଧିକ କହିବା ଉଚିତ ମଣୁ ନାହିଁ।

*ଶକୁନ୍ତଳା ପଣ୍ଡା*

# ସୂଚୀ

# ଜନ୍ମରାତିର ସ୍ୱପ୍ନ

ଠିକ୍ ସେଦିନ ଶ୍ୱେତା, ଅଭିଳାଷ ଏକ ଅଭୁତ ନିଷ୍ପତ୍ତି ନେଲେ। ଶ୍ୱେତାକୁ ପଇଁଚାଳିଶ ପୂରିବାକୁ ଗୋଟିଏ ଦିନ ବାକି। ଅଭିଳାଷକୁ ପଚାଶ। ସେମାନେ ଏବେ ଜନ୍ମଦିନ ପାଳିବେ। ତେବେ ଏଇ ଅବସରରେ ଅନ୍ତରଙ୍ଗ କେତେଜଣଙ୍କୁ ନେଇ ଖୁସି ହେବାର ଯୋଜନାଟିଏ ପ୍ରସ୍ତୁତ କରାଯିବ।

ଶୋଇବା ଖଟକୁ ଲାଗି ଦେଢଫୁଟରେ ତିନିଫୁଟର ଟେବୁଲ୍, କାନ୍ଥରେ ପୁଅ ଝିଅଙ୍କର ହସିଲା ଫଟୋ। ବୁକ୍‌ସେଲଫ୍‌ରେ ସେ ଦୁହିଁଙ୍କର ଯୁଗ୍ମ ଫଟୋ।

ଟେବୁଲ୍ ଉପରେ ସୁନେଲି ବର୍ଡର୍ ଦିଆ ଚକୋଲେଟ୍ ରଙ୍ଗର ଖୋଲା ଡାଏରୀଟି ମଝିରେ ରୂପାପରି ଚକ୍‌ଚକ୍ କରୁଥିବା ବଲ୍‌ପେନ୍‌ଟିଏ। ଟେବୁଲ ଉପରକୁ ଝୁଲି ଆସିଛି କ୍ରିମ୍ ରଙ୍ଗର ସିଲକ୍‌କନାର ଲ୍ୟାମ୍ପ ସେଡ୍। ତା' ମଧ୍ୟରେ ଜଳୁଥିବା ଇଲେକ୍‌ଟ୍ରିକ୍ ବଲ୍‌ବ୍‌ଟିର ଆଲୋକରେ ଶ୍ୱେତା ମୁହଁର କିଛି ଅଂଶ ଆଲୋକିତ ହୋଇଥିଲା ଏବଂ ଏସବୁ ସ୍ପଷ୍ଟ ଦେଖାଯାଉଥିଲା।

ଛବିର ମଡେଲ୍‌ଟି ଭଳି ବସିଛି ଶ୍ୱେତା। ଏବେ ସେ କ'ଣ ଭାବୁଛି? ପ୍ରଥମେ କାହା ନାଁ ଲେଖିବ?

''ଏମିତି ଫରମାଲ୍ ପାର୍ଟିରେ କ'ଣ ଥାଏ?''

''ସେମାନେ ସେୟା ଚାହାଁନ୍ତି, କିଛି ମୁହୂର୍ତ୍ତର ଖୁସି। ଏଇସବୁରେ ଚିରନ୍ତନ ମୂଲ୍ୟ ଖୋଜନି।''

"ସେଇ ଗତାନୁଗତିକତା ? କିଛି ନୂଆ କାମ କଲେ ? ମୋର ଜନ୍ମ ଦିନ, ମୁଁ ଯାହା ଚାହେଁ, ତୁମର ସେମିତି କୋଉ କଥାକୁ ମନା ଯେ ?"

"ଡାକିବ ସେମାନଙ୍କୁ ? ସେଇ ସ୍ୱାମୀ ସ୍ତ୍ରୀ କେତେଜଣଙ୍କୁ ନିମନ୍ତ୍ରଣ କରାଯାଉ ଏଥର।"

"କିଏ ?"

"ଭୁଲିଗଲ ସବୁ ? ତୁମର ପ୍ରେମିକମାନେ !"

ଧେତ୍, କିଏ କାହାକୁ ପ୍ରେମ କରୁଥିଲା ? ସେ କ'ଣ ସହଜ କଥା ହୋଇଛି କି ? ଏକନିଷ୍ଠ ପ୍ରେମିକଟିଏ କାହିଁ ? ଶ୍ୱେତା ମୁହଁ ଫେରାଇଲା। ସେମାନେ ଦୁହେଁ ବୋଧହୁଏ ପରସ୍ପରକୁ ଚାହିଁଲେ। ଆଡ୍ରେସ୍ ଅଛି ? ଫୋନ୍ ନମ୍ବର ଅଛି ? ପୁରୁଣା ଡାଏରୀରୁ ମିଳିଯିବ।

ଶ୍ୱେତା ଏବେ ନୀରବରେ ନାମ ତାଲିକା କରିବା ପୂର୍ବରୁ ପ୍ରଥମେ ଅନ୍ୟ କାହା ନାମ ନଲେଖି ନିଜ ନାମଟି ଗୋଲ ଗୋଲ ଅକ୍ଷରରେ ଲେଖିଲା। ଶ୍ୱେତାର ଜନ୍ମଦିନ ଉପଲକ୍ଷେ- ତାରିଖ ଦେଇସାରି ପୁଣିଥରେ ଶୋଇବା କୋଠରୀର ଛାତକୁ ଚାହିଁଲା। ଶୀତ ଶେଷ ହୋଇ ଆସୁଛି। ପଙ୍ଖା ଦରକାର ହୋଇନାହିଁ, ନିଶ୍ଚଳ ସିଲିଂ ଫ୍ୟାନ୍‌ଟି !

କାହାକୁ କିଏ ପ୍ରେମ କରୁଥିଲା ? ଏ ବୟସରେ ଅପବାଦ ? ଏ ପଚିଶ ବର୍ଷର ଜୀବନ ବୃଥାରେ ଗଲା ? ପିଲାମାନଙ୍କ ଗୋଡ ହାତ ପାଇଗଲା, ତୁମ ଚାକିରୀରେ ପ୍ରମୋସନ, ପୈତୃକ ଅର୍ଥର ପ୍ରାଚୁର୍ଯ୍ୟ। ବାହୁ ପ୍ରସାରିଛି ହସ ଖୁସିର ସଂସାର। ତୁମେ ଜାଣିଛ, ମୁଁ ଅଶାନ୍ତି ସହେ ନାହିଁ। ତୁମକୁ ଏତେ ସୁଖ ଅସହ୍ୟ ହେଉଛି ? ଗତ ରାତିରେ ଶୋଇବାଘରୁ ଉଠି କୁଆଡେ ପଳାଇଥିଲ ? ନା ମଣିଷକୁ ବୁଝିଲ ? ନା ଜୀବନକୁ ?

ଶୋଇବାଘର କବାଟ ଖୋଲି ଚମକି ପଡୁଛି ଅଭିଳାଷ। ଅଧରାତିରେ ବିଛଣା ଛାଡି ପାଖ ଘରକୁ ଉଠିଯାଇଥିବା ଅଭିଳାଷ ଏବେ ଭୋର ବେଳାରେ ନିଦରୁ ଉଠି ଧାଇଁ ଆସୁଛି ଶ୍ୱେତା ପାଖକୁ।

"ହାପି ବାର୍ଥ ଡ଼େ ଡ଼ାର୍‌ଲିଂ,- ଓହୋ, ଟିକିଏ କଥା ତୁମେ ସହିବନି। ଆଜି ଦିନରେ ମୁହଁଫୁଲା ? ନୂଆ ବାହାଘର ଦିନ ପରି ଦିଶୁଚ। ରାତିରେ ମୁହଁରେ ସେ କ୍ରିମ ଫ୍ରିମ୍ କ'ଣ ବୋଳୁଛ କିଓ ?"

ଏତେ କଥା ଭାବି ଆସି ଏ କ'ଣ ଦେଖିଲା ଅଭିଳାଷ ! କଳାବ୍ଲାଉସ,

ଶାୟା ପରିହିତା ଅର୍ଦ୍ଧଉଲଗ୍ନ ନାରୀ ଶରୀର ଶ୍ୱେତାର। ବେକରେ ଶାଢୀ ଗୁଡେଇ ସିଲିଂ ଫ୍ୟାନ୍‌ରେ ଝୁଲୁଛି ସେ।

ଶ୍ୱେତା ଚାହିଁଲା ଅଭିଳାଷକୁ। ଖଟ ଆରପାଖ ଲାଇଟ୍ ଲିଭେଇ ଦେଇ ନିଶ୍ଚିନ୍ତ ନିଦରେ ସେ ଶୋଇଯାଇଛି। ଝରକା ଆରପାଖେ ନିସ୍ତବ୍ଧ ନିଶୁନ୍ ଜହ୍ନରାତି। ଝାଳସରସର ହୋଇ ଠିଆ ହୋଇଛି ଶ୍ୱେତା। ଦେହରୁ ଝାଳ ପୋଛି ଗାଧୁଆ ଘର ଭିତରେ ପଶିଲା। କଳାବ୍ଲାଉଜ୍, ଶାୟା, ଶାଢୀ ବାହାର କରି ରଖି ଦେଇ ଉଷୁମ ପାଣିରେ ଭଲ ଭାବରେ ଧୁଆ ଧୋଇ ପୋଛା ପୋଛି ହୋଇପଡ଼ିଲା। ଦେହରେ ପାଉଡର ପକେଇ ପରିଷ୍କାର ନାଇଟି, ଗାଉନ୍ ପିନ୍ଧି ଆସି ଠିଆହେଲା ଅଭିଳାଷ ପାଖରେ। ଧୀରେ ଗାଉନଟି ଖୋଲି ଖଟର ଅନ୍ୟ ପାଖରେ ରଖିଦେଇ ଶୋଇବ କି ନାହିଁ ଭାବୁଛି। ଟେବୁଲ ପାଖ ଲାଇଟ୍ ଜଳୁଛି। ଲାଇଟ୍ ଲିଭେଇବାକୁ ଆସି ପୁଣି ସେଇଠି ବସିଲା ଶ୍ୱେତା।

ତାଲିକାର ପ୍ରଥମ ନାମ ଅନିମେଷ। ଅନେକ ବର୍ଷ ବିତିଯାଇଛି। ବିସ୍ମୃତିର ସ୍ୱର୍, କୋଉଠି ଏବେ ସେ? ବିବାହ କରି ନଥିଲା କେତେ ବର୍ଷ ପର୍ଯ୍ୟନ୍ତ। କାହାକୁ ପଚାରି ଜାଣି ହବ? ସେ ଘରେ ଏବେ କିଏ ରହୁଛି? ସେଇ 'ପୁରୁଣା ଟେଲିଫୋନ୍?

: ତା' ଲେଟର୍ ପ୍ୟାଡ୍‌ରେ ସେଇ ନମ୍ବର। ତା' ଚିଠି ପାଇଲେ ଆଖିରେ ପଡେ। ଶ୍ୱେତା ଘରେ ଫୋନ୍ ନାହିଁ। ସେ କାରବାର ହୋଇପାରେ ନାହିଁ। ଖାଲି ଚିଠିରେ ସବୁକଥା। ଏତେ ଗୁଡାଏ ଚିଠି? ତୁମେ ଦେଖିବ ନାଇଁ? ଅନିମେଷ ଲେଖିଛି। ନିଅ, ଦେଖ, ଜାଣିପାରିବ। ସବୁ ସେ ଲେଖିଛି। ମୋ ପାଖରୁ ଖଣ୍ଡିକର ବି ଉତ୍ତର ପାଇନି।

: ଏ କ'ଣ? କାହିଁକି? ଖଣ୍ଡେ ଅଧେ ଦେଲନି? କ'ଣ ହେଲା? ଭୟ କରୁଥିଲ?

: ଭୟରେ ଭୟରେ ଡାକବାଲାକୁ ଜଗି ରହୁଥିଲି। ସେ ସମୟରେ ଦିନ ଭିତରେ ତିନି ତିନି ଥର ଡାକ ଆସେ। ପ୍ରତିଦିନ ତିନୋଟି ଚିଠି। ଘରେ ସମସ୍ତେ କ'ଣ ଭାବିଥାଆନ୍ତେ? କିଛି ଭୁଲ୍ ନ ଥାଇ ଦୋଷୀ? ଭଲ ପାଇବାରେ ଭୁଲ୍ କ'ଣ?

: ଜାଣିନି।

: ତୁମେ ତାକୁ ଚାହୁଁନଥିଲ ?

: ନା । ସେ ଲେଖେ - ଏକ ପାଖିଆ ଖେଳ ଭଲ ଲାଗୁନି, ଶ୍ୱେତା । ପଢ଼ନ୍ତୁ, ସବୁ ଏ ଚିଠିରେ ଅଛି । ପାଗଳ ଭଳି ଧାଇଁ ଆସୁଥିଲା ଷ୍ଟେସନରୁ । ଦିଲ୍ଲୀ ୟୁନିଭର୍ସିଟିରେ ପଢୁଥାଏ । ଦୁଇଦିନ ଟ୍ରେନ୍‌ରେ ବସି ଓହ୍ଲାଇବା ପରେ ଆମ ଘରେ ପହଞ୍ଚେ । ତା' ବ୍ୟଗ୍ରତା ଜାଣିଥିଲି । ଚିଠି ପାଉଥିଲି ତ । ଘରେ, ବଗିଚାରେ, କୋଠା ଛାତରେ, କୋଉଠି ହେଲେ ନିଜକୁ ଲୁଚେଇ ରଖୁଥିଲି । ପରିବାରର ଦୂର ସଂପର୍କୀୟ, ଆସିବାରେ ବାଧା ନ ଥିଲା ।

ଦେଖିନ ? ସେଦିନ ଶାଢୀ ଦୋକାନରେ ତୁମ ପାଖକୁ ଲାଗି ଠିଆ ହୋଇଥିଲା, ମୋତେ ଚାହିଁ ହସୁଥିଲା ।

: ଚିହ୍ନେଇ ଦେଲନି ?

: ଆମ ବିବାହର ମାତ୍ର ଆଠଦିନ ।

: କ'ଣ ହେଇଗଲା ?

: ଅତି ବ୍ରିଲିୟାଣ୍ଟ୍ । ଶିଳ୍ପୀ, ଲେଖକ । ଏ ଚିଠିରେ କବିତା ଲେଖିଛି ମୋ ପାଖକୁ ।

: ଏତେ ବେଶୀ ଭୟ ?

ଆଭିଜାତ୍ୟସଂପନ୍ନ ପରିବାରର ଶାନ୍ତ, ବାଧ୍ୟ ଝିଅ ଶ୍ୱେତା । ବାପା, ମା', ଯେଉଁଠି ଚାହିଁବେ ଶ୍ୱେତା ଗ୍ରହଣ କରିବ ଆନନ୍ଦରେ । ଏସବୁ ଲଭ୍ ଫଭ୍ ସିନେମା, ବହିପତ୍ରର କଥା । ଏ ଝମେଲାରେ ସେ ପଶିବନି । ଯାହା ବୁଝୁ, ମୁଁ ତା'ର କିଛି କ୍ଷତି କରିନି । ସେ ବରଂ ବାରମ୍ବାର ଚିଠି ଲେଖି ମୋତେ ହଇରାଣରେ ପକେଇଛି ।

ବିବେକ ମିଶ୍ର । ଟେଲିଫୋନ୍ ନମ୍ବର ? ନୂଆ ନମ୍ବର ରହିଛି ।

''ମତେ ଚିହ୍ନି ପାରୁନାହାଁନ୍ତି ? ଆପଣ ମୋ ସାରଙ୍କ ଝିଅ । ଅଭିଳାଷ ଆଜି ଖାଇବା ପାଇଁ ଡାକିଆଣିଲା । ଏତେ ସୁନ୍ଦର ରାନ୍ଧି ପାରନ୍ତି ? ମୋ ପିଅନ୍‌କୁ ଟିକେ ମାଂସ ରନ୍ଧା ବତେଇ ଦିଅନ୍ତୁ ତ ।'' ପ୍ରଥମ ପରିଚୟ ।

ଅଫିସରୁ ଫେରି କୁଆଡେ ଯାଆନ୍ତି ଏମାନେ ? ଅଭିଳାଷ, ବିବେକ ମିଶ୍ର, ସନାତନ ଦାଶ, ଜଲାଲ୍ ଆକ୍‌ବର୍ ।

ଅଭିଳାଷର ନୂଆ ପ୍ରୋଜେକ୍ଟ । କାମ ପ୍ରାୟ ନାହିଁ, ଦ୍ୱିପହରେ ଖାଇବା ସମୟରେ ଚାଲିଆସେ ଘରକୁ । ଖାଇବା ପରେ ବିଶ୍ରାମ ନେଇ ଉଠି ଏମାନେ

ସବୁ ଏକାଠି ହୋଇ ଚାଲନ୍ତି। କୋଉଦିନ କାହାଘରେ ତାସ ଖେଳ ଚାଲେ, ରାତି ଭୋଜି, ଗମାତ୍, ଅବିବାହିତଙ୍କର କିଛି ବାଧାନାହିଁ। ଅଭିଳାଷଙ୍କୁ ବାଧା ଦିଏ ଶ୍ୱେତା। ଏକା ଏକା ପିଲାଙ୍କୁ ଧରି ଧନ୍ଦି ହଉଛି। ଅଥଚ ପ୍ରାୟ ବିଳମ୍ବରାତିରେ ଫେରିବାଟା ଅଭ୍ୟାସ ହୋଇଗଲାଣି ଅଭିଳାଷର।

: କେବେ ବି ଘରେ ରହୁନ ଯେ ?

: ଏବେ କ୍ଲବ୍‌ଘରେ ବସିବୁ। ଶୀଘ୍ର ଚାଲିଆସିବୁ। ତା' ତାହୁଁନ ଯଦି... ଶ୍ୱେତା ଉତ୍ତର ଦେଲାନାହିଁ।

ଏବେ ସବୁ ବଦଳିଗଲା ସନାତନ ଦାଶର ସ୍ତ୍ରୀ ଆସିବାପରେ। ସେ ମନା କରୁଛି, ଏସବୁ ତାସ୍ ଖେଳ, ଖାଇବା ପିଇବା ଏଠି ହୋଇପାରିବନି। ଜଲାଲ୍‌ର ନୈଷ୍ଠିକ ବାପା, ମା' ଆସିଛନ୍ତି, ରହିବେ ପୁଅ ପାଖରେ। କ୍ଲବ୍ ଘର ନୂଆ ହେଇଛି। କିଛି ସୁବିଧା ହେଉନି। ଏ ବରଂ ଭଲ। ଅଭିଳାଷ ପ୍ରାୟ ଘରେ ରହୁଛି। ପିଲାମାନେ ଶୋଇଗଲେ ସେମାନଙ୍କ ପାଖରେ ବସି ସାହିତ୍ୟଚର୍ଚ୍ଚାରୁ ଆରମ୍ଭ କରି ବାଘ ଶୀକାର ପର୍ଯ୍ୟନ୍ତ ସବୁ ଗପରେ ଭାଗ ନେଉଛି ଶ୍ୱେତା। ଖେଳ କମ୍ ସମୟରେ ଶେଷ ହୋଇଯାଏ ଏବେ। ସେମାନେ ଯିବାକୁ ଉଠନ୍ତି।

ବିବେକ ଗସ୍ତରେ ଯିବାବେଳେ ପିକ୍‌ନିକ୍‌ର ପ୍ରସ୍ତାବ ଦିଏ।

ଆକାଶ, ପାହାଡ, ନଈ, ଦୂରଗାଁ, ପାଖ ଜଙ୍ଗଲ। ଅନିନ୍ଦ୍ୟ ପ୍ରକୃତିକୁ ନିର୍ବାକ ହୋଇ ଚାହିଁରହେ ଶ୍ୱେତା। ବିବେକର ଅସୀମ ଧୈର୍ଯ୍ୟ। ଶ୍ୱେତାର ସାନ ସାନ ପିଲା ଦୁଇଟିଙ୍କୁ ସମ୍ଭାଳି ଶ୍ୱେତାକୁ ବୁଲାଇ ବୁଲାଇ ସବୁ ଦେଖାଏ। ଡାକବଙ୍ଗଳାରେ ଅଭିଳାଷର ଖେଳ ଜମିଉଠେ ଅନ୍ୟବନ୍ଧୁମାନଙ୍କ ସଙ୍ଗେ, ସନାତନ ଦାଶର ସ୍ତ୍ରୀ ଶୋଇଶୋଇ ଟ୍ରାଞ୍ଜିଷ୍ଟର୍‌ରୁ ଗୀତ ଶୁଣି ନଭେଲ୍ ପଢିବାରେ ମନ ଦିଏ।

"ଶରୀରକୁ କଷ୍ଟ ଦେଇ ପାହାଡ଼ ଚଢ଼ିବା, ଓହ୍ଲାଇବା, ଜଙ୍ଗଲର ଗଛ ଗହଳି ମଧ୍ୟରେ ରଙ୍ଗ ବେରଙ୍ଗ ଚଢେଇଙ୍କ କେଁ, କଟରକୁ ସଙ୍ଗୀତ ଭାବି ଶୁଣିବା କି ପାଗଳାମୀ କୁହତ ? ନଈ ପାଖରେ ଠିଆହୋଇ କ'ଣ ଦେଖୁଥିଲ ? ଦୂରରେ କେତୋଟି ଚାଳଘର, ନଈରେ ହୁଲିଡଙ୍ଗା ? ଧନ୍ୟ କହିବ ତୁମ ଧୈର୍ଯ୍ୟକୁ !" ଶ୍ୱେତାକୁ ପ୍ରଶ୍ନ ପଚାରି ହସି ହସି ଗଡିଯାଉଛି ସନାତନ ଦାଶର ସ୍ତ୍ରୀ. "ମୁଁ ବାବା ଆରାମ କରିବାକୁ ଆସିଛି। ତୁମେ ବୁଲୁଥାଅ। ଏବେ ବଡାବଡି କରିବାକୁ ଦରକାର ପଡିବ। ବାବୁମାନେ କ'ଣ ପାରିବେ କି ?"

ଶ୍ୱେତା ଉଠେ ଦେଖିବାକୁ ରନ୍ଧା କେତେ ଦୂର ଗଲା। ସନ୍ଧ୍ୟା ପୂର୍ବରୁ

ଫେରିଯିବା ଭଲ।

ବୈଠକ ଘରେ ଅଭିଳାଷର ହୋ ହୋ ହସ। ଶ୍ୱେତା ଆଖିରେ ବିସ୍ମୟ। ଛୋଟ ସହରରେ କେତୋଟି ବା ବୁକ୍‌ଷ୍ଟଲ! ନୂଆ ମାସିକ ସାହିତ୍ୟ ପତ୍ରିକାଟି ଆସିବା ମାତ୍ରକେ ପଚିଶଖଣ୍ଡ କିଣି ଫେରିଛି ବିବେକ।

''ଏସବୁ କ'ଣ କରିବୁ? ଦୋକାନ ଖୋଲିବୁ କି?'' ପୁଣି ହୋ ହୋ ହସ।

''ହସୁଛୁ କ'ଣ? ତୋ ପାଇଁ ଯାହା ରନ୍ଧା ହୋଇଥିବ ଖାଇ ଦେଇ ପଳେଇବି। ଶ୍ୱେତାର କବିତା ପ୍ରକାଶ ପାଇଛି। ଫଟୋ ସହ କବିତା। ଏ ପତ୍ରିକା ବଣ୍ଟାଯିବ।''

ନିଜ ଲେଖା ଦେଖିବାର ଇଚ୍ଛା ସଂବରଣ କରି ରୋଷେଇ ଘରକୁ ଗଲା ଶ୍ୱେତା। ଏମାନେ ଛାଡିବେନି, ଖୁଆଇବାକୁ ହେବ। ଅଭିଳାଷର ପାଟି ଶୁଣାଯାଉଛି, ''କ'ଣ କରୁଛ ଶ୍ୱେତା? ଆସ ଦେଖିବ ଏଠି।''

ବେଶ୍ ଭଲଥିଲା ସେ ସମୟ। ଏବଂ ସେମାନଙ୍କ ବନ୍ଧୁତ୍ୱ। ଯାପରେ କେତେ ବର୍ଷ ସେମାନେ ସମସ୍ତେ ପ୍ରାୟ ବିଚ୍ଛିନ୍ନ ହୋଇ ରହିଲେ। ବିବେକ ସାଙ୍ଗରେ ଦେଖାହୁଏ। ପାଖ ସହରରୁ ଆସିବାର ହେଲେ ପୂର୍ବରୁ ଫୋନ୍ କରେ, କେବେ କେବେ ହଠାତ୍ ପହଞ୍ଚି ଯିଦ୍ କରେ ଶ୍ୱେତାକୁ ବୁଲେଇ ନେବ ଅଭିଳାଷ ଯାଉ ବା ନଯାଉ। ଏ ନୂଆ ସହରରେ ପହଞ୍ଚି ସେମାନେ କ'ଣ ଦେଖିଲେଣି?

ଶ୍ୱେତା ଅଭିଳାଷକୁ ଚାହେଁ, ସେ ଉତ୍ତର ଦେଉ। ବିବେକ ବୁଝେ, ଶ୍ୱେତାକୁ ନେବାକୁ ହେଲେ ଅଭିଳାଷକୁ ନେବାକୁ ହିଁ ହେବ।

ସେଦିନ ସହରର ପଞ୍ଚତାରକା ହୋଟେଲ୍‌ରେ କୌଣସି ଏକ ବିଶେଷ ଉତ୍ସବରେ ନିମନ୍ତ୍ରିତ ଅଭିଳାଷ, ଶ୍ୱେତା। ଫେରିବା ସମୟରେ ବିବେକକୁ ହୋଟେଲ୍‌ର ଲାଉଞ୍ଜ୍‌ରେ ଦେଖିଲେ ସେମାନେ।

ବିବେକ ବାର୍‌ରୁ ଫେରୁଥିଲା। ତା'ର କେତେକ ବନ୍ଧୁ ବିଦାୟ ନେଇ ଚାଲିଯାଉଥିଲେ। ପାଦର ଭାରସାମ୍ୟ ରଖିବାରେ ସମର୍ଥ ହେଉ ନଥିଲା ସେ। ଅଥଚ ଆଖି ଦୁଇଟି ଆନନ୍ଦରେ ଉଜ୍ଜଳ ହେଇଉଠିଲା ଏମାନଙ୍କୁ ଦେଖି।

ଏମିତି ଅବସ୍ଥାରେ ବିବେକକୁ ହଠାତ୍ ଦେଖିବ ଭାବିନଥିଲା ଶ୍ୱେତା। ଅଭିଳାଷ ଯିବାକୁ କହିଲା। ରାତି ବେଶୀ ହେଲାଣି। ସେ ଗାଡି ଷ୍ଟାର୍ଟ କରିଛି, ଶ୍ୱେତା

ବସିବାକୁ ଯାଉଛି, ଠିକ୍ ସେତିକିବେଳେ ଅଦ୍ଭୁତ ଅନୁରୋଧ କଲା ବିବେକ। ''ଶ୍ୱେତାକୁ ମୁଁ ଛାଡିଦେବି।'' ଅଳି କଲା ଭଳି ଅଭିଳାଷକୁ ବାରମ୍ବାର କହିବାଟା ଭଲ ଶୁଣାଯାଉ ନଥିଲା। ବିବେକ ତା' ଡ୍ରାଇଭରକୁ ଡାକିବାକୁ ଯିବାବେଳେ ଶ୍ୱେତା ଅଭିଳାଷକୁ କହିଲା, ''ତୁମର କ'ଣ ମୁଣ୍ଡ ଖରାପ ?''

ଅଭିଳାଷ ଉତ୍ତର ଦେଲା, ''ସେ କ'ଣ ତୁମକୁ ଖାଇଦବ ? ବ୍ୟସ୍ତ କାହିଁକି ?'' ଶ୍ୱେତାକୁ ଛାଡି ଅଭିଳାଷ ଚାଲିଯାଉଛି। ବିବେକ ଡ୍ରାକୁଛି ତାକୁ।

''ମାତ୍ର ତିନିମିନିଟ୍‌ର ରାସ୍ତା। କ'ଣ ଦରକାର ଥିଲା... ?''

ଶ୍ୱେତାକୁ ଉତ୍ତର ଦେବାକୁ ଯାଇ ବିବେକ କହିଲା, ''ତା' ତୁମେ ବୁଝିପାରିବନି, ସେଇ ତିନି ମିନିଟ୍ ମୋ ପାଇଁ କେତେବେଶୀ !''

ଶ୍ୱେତା ହାତ ପାପୁଲିଟି ବିବେକର ହାତରୁ ଧୀରେ ଖସାଇଆଣିଥିଲା। ସେଇ ରାତିରେ ଅଭିଳାଷକୁ କହିଲା, ''ତୁମକୁ ଜାଣିଲି। ଏବେ ଯାହାକୁ ଯାହା କହିବା କଥା, ମୁଁ କହିବି।''

ତା'ପରର ବିଷୟ ଅନ୍ୟ ପ୍ରକାରର।

ସନାତନ ଦାଶ ଫୋନ କରୁଛି। ଅଭିଳାଷ ରହିଥିବା ପ୍ରାଇଭେଟ୍ ସେକ୍ଟର ଫାର୍ମରେ ସେ ଏବେ ଆସି ଭଲ ପୋଷ୍ଟରେ ରହିବ।

''ଶୁଣୁଛ ? ସନାତନ ଆସିଗଲା।'' ଅଭିଳାଷର ଆନନ୍ଦ ଉଛୁଳି ଉଠିଛି। ଶ୍ୱେତା କହିଲା, ''ଥାଉ, ଢେର୍ ହେଲା- ବହୁତ କାମ କରିବାର ଅଛି, ସାଙ୍ଗ ସୁଖ ଏତେ ଦରକାର ନାହିଁ।''

ବନ୍ଧୁ ହିସାବରେ ସନାତନ ଅଭିଳାଷର ଅଧିକ ପ୍ରିୟ। ସନାତନ ସଙ୍ଗେ ଦେଖା ହେବାରୁ ତାକୁ କୁଣ୍ଢେଇ ପକାଇ ଅଭିଳାଷ କହିଲା, ''କିରେ ଦିନକୁ ଦିନ ଟୋକା ହୋଇଯାଉଛୁ ? ଦେଖ ତ ଶ୍ୱେତା, କି ହାଣ୍ଡସମ୍ ଦେଖାଯାଉଛି ଯେ।''

ଉତ୍ତର ନ ଦେଇ ହସୁଛି ସନାତନ। ସବୁ ଦୋଷ ଅଭିଳାଷର। ଏତେ ବେଶୀ ହୋ, ହଲ୍ଲା କେବେ ବି ପସନ୍ଦ କରେନି ଶ୍ୱେତା। ଏଣେ ଅଭିଳାଷର ମନ ଭାଙ୍ଗିଯିବ।

ରାତି ଆଠଟାରେ କ୍ଳାନ୍ତ ହୋଇ ଫେରନ୍ତି ଅଭିଳାଷ, ସନାତନ। ବାରଟା ପୂର୍ବରୁ କ୍ୱଚିତ୍ କେବେ ଘରକୁ ଯାଏ ସନାତନ।

''ସେ ଲେଖା, ଫେକା, ରୋଷେଇ କିଛି ଚଳିବନି। ତୁମେ ଆମ ସଙ୍ଗେ

ଚୟନ୍ କର,'' ଶ୍ୱେତାର ହାତଟାଣି ବୈଠକ ଘର ଭିତରକୁ ନେଇ ଆସେ ସନାତନ।

ପ୍ରଥମେ ପ୍ରଥମେ ଏଭଳି ଆନ୍ତରିକତା, ଅନ୍ତରଙ୍ଗତାରେ ଚହଲିଗଲା ଶ୍ୱେତା। ଯାହା ସେ ଚାହୁଁ ନଥିଲା, ସେଭଳି ନିଜେ ହଜିଯିବାର ଏବଂ ନିଜକୁ ନିଜ ଅକ୍ତିୟାରର ବାହାରେ ଆବିଷ୍କାର କରି ଚିନ୍ତିତ ହୋଇ ପଡିଲା ସେ।

ସନାତନ ଅନେକ ସମୟରେ ଅଫିସରୁ ନିରୋଳାରେ ଫୋନ୍ କରି କହେ, ''ତୁମକୁ କିଛି କହିବାର ଅଛି। ଅନେକ ଦିନରୁ ଭାବୁଛି।''

ଶ୍ୱେତା ଅସ୍ଥିର, ନିରୁପାୟ। ଅଭିଳାଷ ଘରେ ନ ଥିବାର ସୁଯୋଗରେ ଆସି ପହଞ୍ଚେ ସନାତନ। ''ଆଜି ନୁହଁ, ସେଇ ଅନେକ ବର୍ଷରୁ ମୁଁ ତୁମକୁ କହିପାରୁନି। ଶ୍ୱେତା, ମୋ ବ୍ୟତୀତ କେହି ଜାଣିନାହିଁ, ଚାକିରୀ ଛାଡି ଏ ପ୍ରାଇଭେଟ୍ ସେକ୍ଟରରେ ଚୟନ୍ କରିବାର ଉଦ୍ଦେଶ୍ୟ କେବଳ ମୋଟା ଅର୍ଥର ପ୍ରଲୋଭନ ନୁହଁ, ତୁମକୁ ଟିକିଏ ପାଖରେ ଦେଖିବି, ପାଖରେ ପାଇବି ?''

ମୁଁ ? ଅଭିଳାଷ ନୁହେଁ ? ଯିଏ ନିଜ ବନ୍ଧୁମାନଙ୍କୁ ସ୍ତ୍ରୀ, ପରିବାର ଅପେକ୍ଷା ଅଧିକ ନିଜର କରେ, ସେ ହେଲାନାହିଁ ? ଅଥଚ! ଶ୍ୱେତା ମାନସିକ ସ୍ଥିରତା ଫେରି ପାଉଛି। ସେ ଯେପରି ମୁକ୍ତି ପାଇ ଯାଇଛି।

କ'ଣ ସେ କହିଲା ସନାତନକୁ ? ସେ ଦିନରୁ କାହିଁକି ଥରଟିଏ ପାଇଁ ସେ ଆସିନାହିଁ। ଫୋନ୍ କରିନାହିଁ ଶ୍ୱେତାକୁ। ବାହାରେ ଦେଖାହୁଏ ଖୁବ୍ କ୍ୱଚିତ। ଗହଳି ଥାଏ, ସାଧାରଣ କିଛି କଥାବାର୍ତ୍ତା।

ଅଭିଳାଷ କହେ, ''କ୍ଷମା କରିଦିଅ। ବିଚରା ଦୁଃଖିଟାଏ। ବାହାହେଲା, ସ୍ତ୍ରୀ ସୁଖ ପାଇଲାନି। ତା'ର ମୋଟା ଗର୍ବୀ ସ୍ତ୍ରୀ ତାକୁ ଖାତିର କରେନା। କଳି ତକରାଳ କରି ମାସରେ ଅଧେଦିନ ବାପଘରେ କଟାଏ, ପୁଅଟି ତ ହଷ୍ଟେଲରେ। ସନାତନର ଏକାକୀ ଜୀବନ।''

''କିଏ କହେ ଏସବୁ ? ସେ ତ ଭୁଲ୍‌ରେ ତା' ସମସ୍ୟା, ତା' ନିଜ ସଂପର୍କରେ ଶବ୍ଦଟିଏ କହିନାହିଁ।''

''ଜଲାଲ୍ ସବୁ ଜାଣେ। ପାଖାପାଖି ରହୁଥିଲେ ତ।''

ଜଲାଲ୍ ଆକ୍‌ବର ! ଟେଲିଫୋନ୍ ? ଆଡ୍ରେସ୍ ?

ଶ୍ୱେତା କାଗଜପତ୍ର ଘାଣ୍ଟି ପକାଇଲା। ବ୍ୟକ୍ତିଗତ କାଗଜପତ୍ର ଥିବା ବୁକ୍‌ସେଲ୍‌ଫ୍‌ରେ ଡାଏରୀଟି ଖୋଲା ହୋଇ ପଡ଼ିଛି। ଫଟୋରେ ସୁନ୍ଦର ଦିଶୁଛି ଜଲାଲ୍। ଅତି

ଖୁସ୍ ମିଜାଜିଆ ଲୋକ। ନାଜିଆ ବେଗମ୍ ସହ ଲୁଚେଇ ଲୁଚେଇ ଏ ଫଟୋ ଉଠାଇଛି। ବିବାହ ପୂର୍ବରୁ ଜଲାଲ୍ ଥିଲା ଅନ୍ୟ ପ୍ରକାରର। ସୁନ୍ଦରୀ ଝିଅ, ଫିଲ୍ମଷ୍ଟାରଙ୍କ ବିଷୟରେ ଖୁବ୍ ଆଲୋଚନା କରେ ସେ। ଏବେ ଜଲାଲ୍‌ର ଯୁଗ୍ମ ଫଟୋ ଶ୍ୱେତାର ଆଖିରେ ଝାପ୍‌ସା ହୋଇଉଠିଲା। ସେ ଦେଖୁଥିଲା ଆଉ ଖଣ୍ଡିଏ ଫଟୋ।

ସେଦିନର ସେଇ ଛୋଟ ସହରରେ ଖୁବ୍ ବର୍ଷାରେ ଭିଜି ଭିଜି ତାଙ୍କରି ଘରର ବାହାର ପାଖ କବାଟ ପାଖରେ ଠିଆ ହୋଇଛି ଜଲାଲ୍। ପଚିଶ, ଛବିଶ ବର୍ଷର ସୌମ୍ୟ ଯୁବକ। ହାତରେ ଅର୍ଦ୍ଧପ୍ରସ୍ଫୁଟିତ ସତେଜ ଗୋଲାପ କଢ଼ିଟିଏ।

ଭୟଙ୍କର ବର୍ଷାରାତି। ଦୁଇ ଦିନ ପାଇଁ ବାହାରକୁ ଯାଇଛି ଅଭିଳାଷ। ଏକାକିନୀ ଶ୍ୱେତା। ପିଲାମାନେ ଖେଳୁ ଖେଳୁ ଶୋଇ ଯାଇଛନ୍ତି କେତେବେଳୁ। କାମ କରୁଥିବା ଲୋକଟି ତା' କୋଠରୀ ଆଉଜେଇ ସନ୍ଧ୍ୟାରୁ ଶୋଇଯାଇଛି। ଅଭିଳାଷ ଘରେ ନଥିଲେ ସବୁ କାମ ସଂକ୍ଷିପ୍ତ। ଘଡ଼ଘଡ଼ି, ବିଜୁଳି ମାରୁଛି, ମେଘ ବର୍ଷୁଛି। ସେ ଶବ୍ଦରେ କୁଆଡେ ମିଳେଇ ଯାଉଛି ବାହାର କବାଟରେ ଠକ୍‌ଠକ୍ ଆବାଜ୍ ! ଜଲାଲ୍ ସେମିତି କବାଟ ବାଡ଼େଇ ଚାଲିଛି।

ବିଜୁଳି ଝଲକରେ ଏବଂ ଗାଡିର ଆଲୁଅରେ ସ୍ପଷ୍ଟ ଦେଖିପାରିଲା ଅଭିଳାଷ ଫାଟକ ଭିତରେ ଥିବା ଜଲାଲ୍‌ର ନୂଆ ଧଳା ଗାଡିଟି। ସେ ଫେରିବାର ନ ଥିଲା, ସମସ୍ତେ ଜାଣିଛନ୍ତି। କାମ ନ ହେବାରୁ ସେ ଚାଲିଆସିଛି। ବାହାର ବାରଣ୍ଡାରେ ଜଲାଲକୁ ଦେଖି କିଛି କହିବା ପୂର୍ବରୁ ଜଲାଲ୍ ପଚାରିଛି, ''ଘରେ ନ ଥିଲ କି ?''

ଦୁଇପଦ କଥା କହି ଅଭିଳାଷ ତାକୁ ବିଦାୟ ଦେଇଛି। ଜଲାଲ୍ ହାତରୁ ଗୋଲାପ କଢ଼ିଟି ନେଇ ଶ୍ୱେତାକୁ ବଢେଇ ଦେଇ ଅଭିଳାଷ କହେ, ''ଜଲାଲ୍ ଆସିଥିଲା।'' ଶ୍ୱେତା ଆଶ୍ଚର୍ଯ୍ୟରେ ପଚାରେ, ''ତୁମେ କିଛି ନ କହି ତାକୁ ବିଦା କରିଦେଲ ?''

''କହିବି କ'ଣ ? ତା'ର ସ୍ୱଭାବ ମୁଁ ଜାଣିଛି।'' ଅଭିଳାଷ ଏ କଥାରେ ଗୁରୁତ୍ୱ ଦେବାଭଳି କିଛି ଥିବା ପରି ଭାବୁନାହିଁ।

ଯା ପରେ ଶ୍ୱେତା ମନରେ ମଣିଷ ପ୍ରତି ଭୟ, ଆଶଙ୍କା, ଅବିଶ୍ୱାସର ଏକ ଫେଣ୍ଟାଫେଣ୍ଟି ଭାବ ସଂଚରି ଯାଇଥିଲା।

ସେ ପାଖରେ ଟେଲିଫୋନ୍ ବାଜୁଛି।
-ହଁ...ହଁ... ଜଲାଲ୍ ଆକବରଙ୍କ ଘର।
-କିଏ ନାଜିଆ ଭାବୀ? ସବୁ ଭଲ ତ? ଜଲାଲ୍...
-ଓଃ...କେବେ?...ଆଃ ଥାଉ, ଯିବି ହଁ...ହଁ...

-ଶ୍ୱେତା, ଶ୍ୱେତା... ଅଭିଳାଷ ତାକୁ ଆସ୍ତେ ଛୁଇଁ ଉଠାଇଲା।
-ହାପି ବାର୍ଥଡେ ଡାର୍ଲିଂ।

ଆଖିରୁ ନିଦ ଛାଡିନି। ବିଛଣାରେ ଉଠି ବସି ଗତ ରାତି କଥା ମନେ ପକାଇଲା ଶ୍ୱେତା। ଅଭିଳାଷକୁ କହିଲା, ''କ'ଣ ସ୍ୱପ୍ନ ଦେଖିଲି ଜାଣିଛ? ଜଲାଲ୍ ଆସିଥିଲା। ଜଲାଲ୍ ଆକବର। ମନେ ପଡୁନି? ଚାହିଁଚ କ'ଣ ଏମିତି? ସେଇ ଯୋଉ ସୁନ୍ଦର ଗୋଲାପ କଢ଼ିଟି! ମତେ କହୁଛି: ଭାବୀଜାନ୍, ଏଇଟି ତୁମ ପାଇଁ, ତୁମ ଜନ୍ମଦିନରେ - ମୋତେ କ୍ଷମା କରିଦିଅ। ଧେତ୍, ତୁମେ ଉଠେଇ ଦେଲ। କେତେ ଭଦ୍ର, ଶାନ୍ତ ଶାନ୍ତ ମନେ ହେଉଥିଲା। ସେ କ'ଣ ଆଉ ସେଦିନର ଜଲାଲ୍ ହୋଇଛି? ସକାଳୁ ତୁମେ ଫୋନ୍ କରିବାର ଥିଲା ନା? ସବୁ ନମ୍ବର ଲେଖି ରଖିଛି ଟେବୁଲ୍‌ରେ।''

''ଜଲାଲ୍ ନାହିଁ, ସେ ଆକ୍‌ସିଡେ଼ଣ୍ଟରେ...''

''ଆକ୍‌ସିଡେ଼ଣ୍ଟ?''

''ବମ୍ବେରୁ ନୂଆଗାଡ଼ି ନେଇ ଫେରୁଥିଲା। ଖୁବ୍ ସ୍ପିଡ୍‌ରେ ଗାଡ଼ି ଚଲାଉଥିଲା।'' □□

ସୁଚରିତା, ଜନ୍ମଦିନ ବିଶେଷାଙ୍କ, ୧୯୯୩

# ଅରଣ୍ୟ, ଆକାଶ ଓ ରାସ୍ତା ଖୋଜୁଥିବା ବିକ୍ରମ

ସେ ବାରମ୍ବାର ଘରୁ ବାହାରକୁ ଯିବା ଆସିବା କରୁଛି। ତା' କୋଠରୀ ପାଖ ଛୋଟ ଖୋଲା ଛାତ ଖଣ୍ଡକରେ ପାଞ୍ଚ ମିନିଟ ବି ସ୍ଥିର ରହି ପାରୁନି। ଏ ବୋଧହୁଏ ତା'ର ସବୁଦିନିଆ ଅଭ୍ୟାସ।

କ'ଣ ଦେଖୁଛୁ, ଭିକି? ସାଙ୍ଗମାନଙ୍କ ଖେଳ? ନାଇଁ ତ, ଯେ ଚାହିଁଛି ଅନ୍ୟଆଡେ। ଯିବୁ ଯଦି ଯାଆ। ବାହାରେ ବୁଲି ଆସିବୁ। ସେମାନଙ୍କୁ ଲୁଚୁଛୁ କାହିଁକି? ଦୁଇ ଦିନ ହେଲା ଦେଖୁଛି ତୁ ସେମାନଙ୍କ ପାଖରୁ ଦୂରେଇ ରହିଛୁ! ବାସ୍, ସେମାନେ ଖେଳି ସାରି ପଡିଆରେ ବସି ଏବେ 'ଖଟି' କରୁଛନ୍ତି। ତୁ ଖେଳି ଗଲୁ ନାହିଁ କି ବୁଲିବାକୁ ମନ କରୁନୁ!

ଦିନଟାରେ ଆଲୁଅ ଜାଳୁ ବନ୍ଦଘର ଭିତରେ ବହି ଖାତା ମେଲେଇ କି ପାଠ ପଢ଼ା? ପଢ଼ା ଟେବୁଲ୍‌ରେ ଛୋଟ ଟ୍ରାଞ୍ଜିଷ୍ଟର ଆକାରର ପୋର୍ଟେବଲ୍ ଟି.ଭିରେ 'ୱାର୍ଲଡ୍ କପ୍ ଟେନିସ୍ ମ୍ୟାନ୍‌ସ ଫାଇନାଲ୍'। ପକେଟରେ ପଶିବା ଭଳି ଟୁ-ଇନ୍ ୱାନ୍‌ରେ ଇଂଲିସ୍ ମ୍ୟୁଜିକ୍। ସ୍ଲୋ ଭଲ୍ୟୁମରେ ଶୁଣିଲେ ପାଠ ନଷ୍ଟ ହୁଏ ନାହିଁ- ଏ ବୁଦ୍ଧି ତୋତେ କିଏ ଦେଇଛି?

ଭିକି-ବିକ୍ରମ। ମୁଁ ତାକୁ ଅନେକ ବେଳୁ ଦେଖୁଛି। ସେ ମୋତେ ଚାହୁଁନାହିଁ।

ଥରେ କହିଥିଲା, ‘‘ବର୍ଣ୍ଣଭିଟା କରିଦବ ?’’

ମୁଁ ବର୍ଣ୍ଣଭିଟା ଗ୍ଲାସ ନେଇ ତା’ କୋଠରୀରେ ପଶି ଅବାକ୍। ଏଠି ଏ ଟୋକାର ଶ୍ୱାସ ରୁଦ୍ଧ ହେଉନାହିଁ? ଏଆର କଣ୍ଡିସନ୍‌ର ଚାଲିଛି, ଘରଟା ଅନ୍ଧାରିଆ। ଝରକା କବାଟ ବନ୍ଦ, ଟେବୁଲ ଲ୍ୟାମ୍ପ ତଳେ ଫିଜିକସ୍, ମ୍ୟାଥ୍‌ର ବହି ଖୋଲା ହୋଇ ପଡିଛି। ବହୁ ପ୍ରକାର ବଲ୍‌ପେନ୍, ପେନ୍‌ସିଲ, ଅଧା ଖୋଲା ବିସ୍କୁଟ, ପଟାଟୋ ଚିପ୍‌ସ୍ ପ୍ୟାକେଟ୍। ଏ ସବୁକୁ ବେଖାତିର୍ କରି ଛୋଟ କମ୍ପ୍ୟୁଟରେ ଗେମ୍ ଟୁଂଟାଂ କରି ସେ ଖେଳୁଛି !

ବର୍ଣ୍ଣଭିଟା ଗ୍ଲାସଟା ହାତକୁ ନେବାଯାଏ ଖେଳ ଚାଲିଥାଏ। ମୁଁ ତାକୁ କହିବି କହିବି ହେଲି- ପାଠ ଥାଉ, ବହୁତ ହେଲା। ଏଥର ବାହାରକୁ ଆ।

ମୋ ଭିତର କଥା ବୁଝିଗଲା ଭଳି ପଢାଘରୁ ବାହାରି ଆସି ଭିକି ଛାତ ବାଡା ପାଖରେ ଠିଆ ହୋଇ ପଡିଆକୁ ଚାହିଁଲା। ମୁଁ ଜାଣିଥିଲି ସେ ସାଙ୍ଗମାନଙ୍କୁ ଆଦୌ ଡାକିବ ନାହିଁ। ଅନିର୍ଦ୍ଦିଷ୍ଟ ଭାବରେ କୁଆଡେ ଚାହିଁ କ’ଣ ଦେଖୁଛି ସେ ? ଛାତରେ ଥିବା ଚଉକିରେ ବସିପାରେ ଅନ୍ତତଃ ବର୍ଣ୍ଣଭିଟା ଗ୍ଲାସଟା ଶେଷ ହେବା ଯାଏ। ତା’ କଲା ନାହିଁ। ଗୋଲାପ, ଆର୍‌କେରିଆ କୁଣ୍ଡ ମଝିକୁ ଖାଲି ଗ୍ଲାସଟା ଠେଲିଦେଇ ପୁଣି ଥରେ ସେ ବାଡା ପାଖକୁ ଗଲା। ୟାକୁ ମିଶେଇ କେତେଥର ଯିବା ଆସିବା କଲାଣି !

ଭିକି ହାତ ମୁଠା ମୁଠା କରି ଦୁଇ ହାତ ବୁଲଉଥିଲା, ହଠାତ୍ କ’ଣ ମନେ ପଡିବା ଭଳି ପଢା କୋଠରୀରେ ପଶିଯାଇ ଟି.ଭିଟା ଫୁଲ୍ ଭଲ୍ୟୁମ୍ କରି କବାଟଟା ବନ୍ଦ କରିଦେଲା।

ମୁଁ କ୍ଳାନ୍ତ ହୋଇ ବସିଛି ଏଠି। ମହାତ୍ମା ଗାନ୍ଧୀ ରୋଡ୍‌ରୁ ସେକ୍ସପିଅର ହଲ୍ ପର୍ଯ୍ୟନ୍ତ ଟୁ-ହ୍ୱିଲର୍‌ରେ ଯିବା ଆସିବା, କିଛି ରାସ୍ତା ପାଦରେ ଚାଲି ଚାଲି ଫେରିବା ସମୟରେ ବସ୍ ବା ସେହି ଅଟୋରିକ୍ସାକୁ ଅପେକ୍ଷା। ‘ସର୍ବଭାରତୀୟ ଲେଖକ ସମ୍ମିଳନୀ’ରେ ସେଦିନର ଅଧିବେଶନରେ ଯୋଗ ଦେବା ନାଁରେ ଅଜସ୍ର ଅସ୍ୱସ୍ତି ନେଇ ଫେରି ଆସି ଚଉକି ଖଣ୍ଡିଏ ପକାଇ ଖୋଲା ପବନରେ ବସିଛି। ଭିକିର କାରବାର ଦେଖୁଛି, ଉତ୍ପାତ ଦେଖୁଛି।

ଚଉଦ, ପନ୍ଦର ବର୍ଷର ପିଲାଟା। ଏକା ଏକା ବସି କ’ଣ କରନ୍ତା ! ମାଆ ଫେରି ନାହିଁ, ତା’ର ବ୍ୟାଙ୍କ୍ ଆୱାର ପରେ ବାହାରିଥିଲେ ପହଞ୍ଚିବାକୁ

ଆହୁରି କୋଡ଼ିଏ ମିନିଟ ବାକି। ହୋଇପାରେ କାହା ସଙ୍ଗେ ପଦେ ଅଧେ ଗପି ଡେରି କରିପାରେ। କାହାକୁ ଲିଫଟ୍ ଦେଇ ଆଉ ଦଶ ମିନିଟ ବିଳମ୍ବରେ ଆସିପାରେ।

ମୁଁ ତା' ଘରେ ତିନି ଚାରି ଦିନର ଅତିଥି। ସେଇଭଳି ଅତିଥି, ଯାହାକୁ ଦେଖିଲେ ହୋଷ୍ଟ କହେ, ''ମୋ ପୁଅର ଖାଇବାଟା ଦେଖିବୁ, ଗରମ କରି ନ ଦେଲେ ସେ ଥଣ୍ଡା ଶୁଖିଲା ଖାଇଦବ।''

''ବ୍ୟସ୍ତ ହ'ନା, ସେ ସ୍କୁଲରୁ ଫେରିବା ପୂର୍ବରୁ ମୁଁ ଆସି ଯାଇଥିବି।''

ମାୟା କହିଲା, ''ସେ ଆଜି ସ୍କୁଲ ଯାଉ ନାହିଁ। ଘରେ ରହି ପଢ଼ିଲେ ତା'ର ସବୁକଥା ଦରକାର। ଘଡ଼ିକି ଘଡ଼ି ଭୋକ। ତୁ ଆସିଛୁ, ଏବେ ମୋର ଚିନ୍ତା ନାହିଁ।''

''ସମ୍ଭାଳି ନେବି,'' ମୁଁ ତାକୁ ଉତ୍ତର ଦେଲି।

ମାୟା ସବୁଦିନେ ସୁନ୍ଦର। ଏବେ ବୟାଳିଶ ତେୟାଳିଶ ବର୍ଷ ବୟସରେ ସେ ଚବିଶ, ପଚିଶ ବର୍ଷର ଯୁବତୀ ଭଳି ଦେଖାଯାଉଛି। କୁହାଯାଇପାରେ ଅନିନ୍ଦ୍ୟା ସୁନ୍ଦରୀ। ରଙ୍ଗ ସଫା, ଚିତ୍ର କଲା ପରି ଆଖି, ନାକ, ଓଠ ଏବଂ ଚେହେରାକୁ ମାନିବା ଭଳି ତା'ର ବ୍ରେନ୍। ସେ ସମୟରେ ବେଶ୍ ଭଲ ପଢୁଥିଲା। ପ୍ରତିଯୋଗିତାମୂଳକ ପରୀକ୍ଷା ସବୁ ଦେବାପାଇଁ ସେ ପ୍ରସ୍ତୁତି କରୁଥିଲା। ତା'ର ଭାଇ ଭଉଣୀ, ଆମେ ସାଙ୍ଗ ସବୁ ଭାବୁଥିଲୁ- ଏ ଏଥର ଟପର୍ ହେବ।

ସେତେବେଳେ ବ୍ୟାଙ୍କରେ ଚାକିରି ପାଇସାରିଥିଲା ସେ। ସେତେବେଳେ ତା'ର ପାଠ, କୃତିତ୍ୱ ବ୍ୟତୀତ ପାର୍ଥ ସମ୍ପର୍କରେ କେହି କେହି କହୁଥିଲେ। ଧୀରେ ଧୀରେ ପାର୍ଥ, ମାୟା ଚର୍ଚ୍ଚାର ବିଷୟ ହେଲେ। ସେମାନେ ପିଲା ଦିନରୁ ଏକାଠି ପଢ଼ିଛନ୍ତି। ତେବେ ମାୟା ସହ ବୁଦ୍ଧି ଜ୍ଞାନରେ ପାର୍ଥର ତୁଳନା କରାଯାଇ ପାରିବ ନାହିଁ ଏବଂ ଏମାନେ ଦୁହେଁ ଦୁଇଟି ସ୍ୱତନ୍ତ୍ର ବିଚାରର ବ୍ୟକ୍ତି। ମାୟା ଚୁପ୍‌ଚାପ୍ କ'ଣ ଭାବେ? ଖୁସି ଅଛି ବା କିଛି ଚିନ୍ତାରେ ପଡ଼ିଛି, ବୁଝିବା ମୁସ୍କିଲ।

ପାର୍ଥ ସମ୍ପୂର୍ଣ୍ଣ ଅନ୍ୟ ପ୍ରକାରର। ହସ ଖୁସି, ହୋ ହଲ୍ଲା ଏବଂ ଜଣେ ସୁପୁରୁଷର ସୌନ୍ଦର୍ଯ୍ୟ, ବ୍ୟବହାରିକ ଜ୍ଞାନ, କଥା କହିବାର କଳା ନେଇ ସେ ସମସ୍ତଙ୍କୁ ଆକୃଷ୍ଟ କରୁଥିଲା। ପାର୍ଥ ଯେ ମାୟାକୁ ନିଶ୍ଚୟ ସୁଖରେ ରଖିବ

ତା' ମାୟା ପରିବାରର ସମସ୍ତେ ବୁଝିଥିଲେ ।

ପାର୍ଥ ଆସୁଥିଲା ମାୟା ପାଖକୁ । ମାୟା ତାକୁ ପାଠ, ପରୀକ୍ଷା କଥା କହିଲେ କହେ, ''ଗଧମାନେ ପଢନ୍ତି, ମୁଁ ଗଧ ହେବି ନାହିଁ । ନିଜ ଅର୍ଜିତ ଅର୍ଥରେ ବିତ୍ତବାନ୍ ହେବାକୁ ମୋର ଇଚ୍ଛା । ତୁମେ ଯାହା ଚାହୁଁଚ କର । ମାତ୍ର ସୁଖୀ ସଂସାର ଗଢିବାକୁ ଯେଉଁ ଅର୍ଥ ଦରକାର, ତା'ର ବ୍ୟବସ୍ଥା ମୁଁ କରିବି ।''

ପାର୍ଥ ଠିକ୍ କହୁଥିଲା । ନିଜକୁ ପ୍ରତିଷ୍ଠିତ କରିବା ପାଇଁ ତାକୁ ସମୟ ଲାଗିବ ନାହିଁ । ତା'ହେଲା । ସେହି ଗୋଟିଏ ବର୍ଷ ମଧ୍ୟରେ ବ୍ୟବସାୟରେ ସଫଳତା, ମାୟା ସହ ବିବାହ ।

ବ୍ୟାଙ୍କ୍‌ରେ ଚାକିରି ପାଇବା ପୂର୍ବରୁ ମାୟା ଅନ୍ୟାନ୍ୟ ପରୀକ୍ଷା ନିମନ୍ତେ ତା'ର ପ୍ରସ୍ତୁତି ଅଧାରୁ ଛାଡି ଦେଲା । ବିବାହ ପୂର୍ବରୁ ପାର୍ଥ ସହ ବୁଲାବୁଲିରେ ସମୟ ଯାଏ । ଅନ୍ୟାନ୍ୟ ଝିଅମାନଙ୍କ ଭଳି ସହଜ, ସାବଲୀଳ ଝରଣାଟିଏ ହୋଇ ଝରିଯାଏ ନାହିଁ ସେ । ସେ ଶାନ୍ତ, ଉଦାସ, ସ୍ଥିର । ଅଥଚ ପାର୍ଥ ଦିନଟିଏ ସ୍ଥିର ଭାବରେ ବସିପାରେ ନାହିଁ । ବନ୍ଧୁମାନଙ୍କ ସୁଖ, ଦୁଃଖରେ ଭାଗ ନେବା ସହ ସେମାନଙ୍କୁ ନେଇ ହୋଟେଲ୍, ପାର୍ଟି, ପିକ୍‌ନିକ୍‌ରେ ତା'ର ଆନନ୍ଦ । କେବେ କେବେ ପୁରୀ, କୋଣାର୍କ, ଚିଲିକା, ଗୋପାଳପୁର ଯିବାର ପ୍ଲାନ କରେ ତ ପରେ ପରେ ସହରର ବଡ ହୋଟେଲ୍‌ମାନଙ୍କରେ ପାର୍ଟିର ବ୍ୟବସ୍ଥା କରିସାରିଥାଏ ।

ଜେଜେବାପା, ବାପାଙ୍କର ଅର୍ଜିତ ଅଜସ୍ର ଅର୍ଥ । ଏକମାତ୍ର ଉତ୍ତରାଧିକାରୀ ପାର୍ଥ । ମୂଳଧନ ପାଇଁ ଚିନ୍ତା ନାହିଁ । ତା'ର ଶିଳ୍ପପତି ଜୀବନ ନିଜେ ଚାହୁଁଥିବା ଢଙ୍ଗରେ ସେ ଆରମ୍ଭ କରିଥିଲା ଏକ ଆଧୁନିକ ବଡ ସହରରେ, ଯାହା ସେ ସ୍ୱପ୍ନ ଦେଖୁଥିଲା ଛାତ୍ର ଜୀବନରେ ।

ମାୟା ସ୍ୱପ୍ନ ଦେଖେ ନାହିଁ । ସେ ସଂସାର କରି ଚଳୁଥିବା ଅନ୍ୟ ମଣିଷମାନଙ୍କ ବିଷୟରେ ଚିନ୍ତା କରେ, ସୁଖ ଦୁଃଖର ତୁଳନା କରେ । ବିଷୟସମ୍ପତ୍ତିସବୁ ଆଶା କରୁଥିବା ସୁଖ ଦେଇପାରେ ନାହିଁ । ଏହା ତା'ର ଯୁକ୍ତି ।

''ତୁମେ ଦୁହେଁ ଯୁକ୍ତି କର କାହିଁକି ? ଭଗବାନ ଯାହା ସୁଖ, ଆନନ୍ଦ ଦେଇଛନ୍ତି, ତା' ଖୁସିରେ ଗ୍ରହଣ କଲେ କ୍ଷତି କ'ଣ ? ଅନ୍ୟ କିଛି କେବେ ହୋଇପାରେ ଭାବି ବିମର୍ଷ ହେବାର କାରଣ କିଛି ନାହିଁ ।'' କେବେ କେବେ ଦେଖାହେଲେ ଦୁଃଖୀ ମନେ ହେଉଥିବା ମାୟାକୁ ମୁଁ ବୁଝାଏ ।

ସେ କହେ, ''ପାର୍ଥକୁ ମୋ ଅକ୍ତିୟାର ବାହାରକୁ ଯିବାକୁ ଦେବି ନାହିଁ ମୁଁ। ଏମାନଙ୍କ ଉପରେ ଟିକିଏ କଣ୍ଟ୍ରୋଲ ରହିବା ଭଲ ନୁହେଁ କି ?''

ଏ ଭୁଲ ଧାରଣା। ପାର୍ଥକୁ ମୁରବୀ ଭଳି କଡା ଶାସନରେ ରଖିବା ଅର୍ଥ ଦାମ୍ପତ୍ୟ ଜୀବନକୁ ବିପର୍ଯ୍ୟସ୍ତ କରିବା, ଏଇ ଛୋଟ କଥାଟି କେବେ ବି ବୁଝିଲାନି ମାୟା।

କିଶୋର ବୟସର ପୁଅ ଝିଅଙ୍କୁ ପ୍ରଶ୍ନ କଲା ଭଳି ହଠାତ୍ ଦିନେ ବିଳମ୍ବରେ ଘରକୁ ଫେରୁଥିବା ପାର୍ଥକୁ ସେ ପଚାରେ, ''ସିନେମା ଏତେ ଶୀଘ୍ର ଶେଷ ହେଲା ନା ଉଠି ଆସିଲ ? ଆଜି ତୁମ ଡିନର୍ ପାର୍ଟିରେ ମିସେସ୍ ଭାର୍ଗବ ଆସିଥିଲେ ନା ? କୁହ, କିମିତି ଜାଣିଲି ?'' ପ୍ରଥମେ ପ୍ରଥମେ ପାର୍ଥ ଏସବୁ ସହଜ ଭାବରେ ନେଉଥିଲା। ଅଳ୍ପ ହସି ଉତ୍ତର ଦେଉଥିଲା, ''କ୍ରସ କୋଶ୍ଚେନ୍ କରୁଛ ? ସିଧା ଅଫିସ୍‌ରୁ ଆସୁଛି। ଖୁବ୍ ଭୋକ। ଅଟ୍‌ଲି ଡିନର ଖାଇନେବି।''

''ମୁଁ ବି ତ ଅଫିସ୍‌ରୁ ଡେରିରେ ଫେରିଛି। ତୁମେ ଡେଭିଡ୍‌କୁ କହିଲନି କାହିଁକି ? ଫ୍ରିଜ୍‌ରେ ସେମିତି କିଛି ନାହିଁ। ସେ ଏ ପର୍ଯ୍ୟନ୍ତ ରୋଷେଇ ଆରମ୍ଭ କରିନାହିଁ କି ମାର୍କେଟ ବି ଯାଇନାହିଁ।''

ପାର୍ଥ ଭୋକରେ ଚାଲିଯାଏ ତା' ଲାଇବ୍ରେରୀ ରୁମ୍‌କୁ। ଦିନକୁ ଦିନ କାମ ବଢୁଛି। ଫ୍ୟାକ୍ଟ୍ରି ଅଫିସ୍‌ରେ ବସି ଅନେକ ଲୋକଙ୍କ ସହ କଥା କହି ସେ କ୍ଳାନ୍ତ।

ଅବିଶ୍ୱସ୍ତ ପଂଝାଏ ପରିଚାରକଙ୍କୁ ଘରେ ରଖିବାକୁ ମାୟା ରାଜି ହୁଏ ନାହିଁ। ଏକମାତ୍ର ଡେଭିଡ୍। ପୁରୁଣା ବୟସ୍କ ଲୋକ। ପାର୍ଥକୁ ପିଲାବେଳୁ ଚଳେଇଛି। ଘରୁ ତାକୁ ପାର୍ଥ ନେଇ ଆସିଛି ଏଠି ଘର ଚଳେଇବ, ଏଇ ଆଶାରେ। କିନ୍ତୁ ଘର ପରିଚାଳନା ଦାୟିତ୍ୱ ଅନ୍ୟ କାହାକୁ ନ୍ୟସ୍ତ କରିବା ପାଇଁ ମାୟା ଚାହେଁ ନାହିଁ। ଏଣେ ଏ ବୟସରେ ଡେଭିଡ୍‌କୁ ଏତେ ବେଶୀ କାମ ସମ୍ଭାଳିବା କଷ୍ଟ ହୁଏ।

ଦିନକୁ ଦିନ ଘରେ ବିଶୃଙ୍ଖଳା। ମାୟା ବ୍ୟସ୍ତ ରହେ ତା'ର ଟ୍ରେନିଂ, ମିଟିଂ, ପ୍ରମୋଶନ୍ ଇତ୍ୟାଦି ନେଇ। ପାର୍ଥର ଗଢି ଉଠିଥିବା ଆଧୁନିକ ଫ୍ୟାକ୍ଟ୍ରି ଯେ ଉନ୍ନତି ପଥରେ, ଏ ବେଳରେ ସେ ଘର ବୁଝିବ ନା ଭିକିର ପାଠପଢା ବିଷୟ ବୁଝିବ ?

ପ୍ରାୟ ବିଳମ୍ବରେ ଫେରି ବିରକ୍ତ ହୁଏ ମାୟା, ''ଏ କିଭଳି ସମ୍ଭବ? ମୁଁ ଭିକିକୁ ପଢେଇବି, ଘର ମ୍ୟାନେଜ୍ କରିବି। ତୁମ ସମସ୍ତଙ୍କ ପାଇଁ ଡିନର୍ ଟେବୁଲ୍ ଆରେଂଜ୍ କରିବି?''

''ଟ୍ୟୁସନ୍ ଟିଚର୍ ରଖିଦିଅ। ଘର ପାଇଁ ଲୋକ ରଖ। ଅସୁବିଧା କ'ଣ? ଡେଭିଡ୍ ଅଛି, ସବୁ ବୁଝିବ।'' ରୋଷେଇଘରେ ଡ଼େଭିଡ଼କୁ ରାତ୍ରିର ଖାଦ୍ୟ ପ୍ରସ୍ତୁତି, ଅନ୍ୟାନ୍ୟ କାର୍ଯ୍ୟରେ ସାହାଯ୍ୟ କରୁଛି ପାର୍ଥ। ସେ ବି କ୍ଳାନ୍ତ। ତା'ର ଏ ଭଳି ଉତ୍ତର ମାୟାକୁ କିଭଳି ଆଘାତ ଦେଉଛି, ତା' ଭାବିବା ପାଇଁ ସେ ଚେଷ୍ଟା କରେ ନାହିଁ।

ମାୟା ପାହାଚରେ ଉଠି ଖୁବ୍ ଶୀଘ୍ର ଚାଲି ଯାଏ ଭିକିର ପଢା କୋଠରୀକୁ। ସେତେବେଳେ ସାଙ୍ଗମାନଙ୍କ ସହ ବାହାରେ ଅନେକ ସମୟ ଖେଳି ସାରି ଆସି ପଢା ଟେବୁଲ୍ ପାଖରେ ବସି ପାଠ ପଢାର ଅଭିନୟ କରୁଥାଏ ଭିକି।

କିଛି ସମୟ ପରେ ମାୟା, ଭିକିଙ୍କୁ ଖାଇବାପାଇଁ ଡାକେ ପାର୍ଥ। ବନ୍ଦ ଘର ଭିତରୁ ନିର୍ଲିପ୍ତ ଭାବରେ ଉତ୍ତର ଦିଏ ମାୟା, ''ଏବେ ନାହିଁ, ଭିକି ପଢୁଛି।''

ଟେବୁଲ୍‌ରେ ଖାଦ୍ୟ ସଜେଇ ରଖି ବହି ଖଣ୍ଡେ ଧରି ଅପେକ୍ଷା କରେ ପାର୍ଥ। ଡେଭିଡ୍ ଦିନ ସାରା ଖଟିଛି। ଆଠଟାରେ ତା'ର ଡ୍ୟୁଟି ଶେଷ କରି ଗ୍ୟାରେଜ୍‌ପାଖ ତା' କୋଠରୀକୁ ସେ ଚାଲିଯାଏ। ପାର୍ଥ ଯାଇ ଦେଖେ ମା' ପୁଅ ଶୋଇବା ଘର ଖଟରେ ଶୋଇଯାଇଛନ୍ତି। ଡ଼କାଡ଼କି କରି ଥକିଯାଏ ସେ। ମାୟାକୁ ଖୁବ୍ ନିଦ। ଭିକି ତ ଆଦୌ ଉଠେ ନାହିଁ ଥରେ ଶୋଇଗଲେ। ମାୟା ତାକୁ ଶୋଇବାକୁ ଦେଲା କାହିଁକି?

ପାର୍ଥ ମନଦୁଃଖ, ଅସନ୍ତୋଷରେ କିଛି ଖାଇନେଇ ଉଠିଯାଏ ଏବଂ ଶୋଇବାର ଇଚ୍ଛା ନ ଥିଲେ ମଧ୍ୟ ଖୁବ୍ ଶୀଘ୍ର ବିଛଣାକୁ ଯାଏ ବାଧ୍ୟତଃ।

ମାୟାର ଅଭିମାନ ବଢେ, ଉଦାସୀନତା ବଢି ଚାଲେ। ତା' ଆଖିରେ ପାର୍ଥ ଆତ୍ମକୈନ୍ଦ୍ରିକ, ସ୍ୱାର୍ଥପର, ନିଜ ସୁଖ, ସ୍ୱାଚ୍ଛନ୍ଦ୍ୟ ବ୍ୟତୀତ କିଛି ଦେଖେ ନାହିଁ। ସେ ଗର୍ଜି ଉଠେ, ''ଏ ଘର ନା କ'ଣ? କାହିଁକି ସମସ୍ତେ ଏକାଠି ବସି ନ ଖାଇବେ?''

''କିଏ ମନା କରୁଛି? ତୁମେ ବୁଝ, ଅସୁବିଧା କ'ଣ ହଉଛି?'' ପାର୍ଥର

ସଂକ୍ଷିପ୍ତ ଉତ୍ତର। ସେ ଅଭିଯୋଗ କରେ ନାହିଁ, ନୀରବରେ ନିଜ କାମ କରିଯାଏ।

ପୁଣି କେବେ କେବେ ବର୍ଷିଯାଏ ମାୟା, ‘‘ଦିନ ଦୁଇଟାରୁ ସ୍କୁଲରୁ ଫେରି ରାତି ଆଠଟା ଯାଏ ବାହାରେ ଖେଳୁଛି ଭିକି। କିଏ ଦେଖିବ ତାକୁ? ମୋର ଅଫିସ୍‌ରେ ଡେରି ହୋଇ ଯାଉଛି।’’

‘‘ମୋ ପାଖରେ ସମୟ କାହିଁ?’’ ପାର୍ଥର ପୂର୍ବ ଭଳି ନିର୍ଲିପ୍ତ ଉତ୍ତର।

ଯା ପରେ ସ୍ତ୍ରୀ, ପୁଅକୁ ନେଇ ବାହାରେ ବୁଲାବୁଲି କରିବାକୁ ସେ ଇଛା କଲେ ମାୟା ରାଜି ହୁଏ ନାହିଁ। ସେଇ ଦିନ ହିଁ ତା’ର ଅଫିସରେ ଅଧିକ କାମ ଲାଗିଯାଏ।

ଭିକିର ହୋମଓ୍ୱାର୍କ ଶେଷ ହୁଏ ନାହିଁ, ନଚେତ୍ କେବେ ପରୀକ୍ଷା ପାଖ ହୋଇଯାଏ। ଏ ବେଳରେ ସେ ସମୟ ନଷ୍ଟ କରିବା ଠିକ୍ ନୁହେଁ।

ମାମା କଥାରେ ମୁହଁ ଖୋଲି ପାରେ ନାହିଁ ଭିକି। ପ୍ୟାଣ୍ଟ, ସାର୍ଟ, ଜୋତା ମୋଜା ପିନ୍ଧି ପ୍ରସ୍ତୁତ ହୋଇ ପୁଣି ଥରେ ଖୋଲା ଖୋଲି କରି ବହି ଧରି ବସେ ସେ।

କେବେ ପାର୍ଥ ଖୁସି ହେଇ କହେ, ‘‘ମାୟା, ପୂର୍ବରୁ କହି ରଖୁଛି, ସଟର୍ ଡେ ନାଇଟ୍, ‘ଓବରେଇ’ରେ ଡିନର୍। ଫରେନ୍ ପାର୍ଟିଙ୍କୁ ଆମେ ଦେଉଛୁ।’’

ଉତ୍ତରରେ ମାୟା ହସିଦିଏ। ଅଥଚ ସେଇଦିନ, ତା’ର ଅଫିସିଆଲ୍ ପାର୍ଟି। ସେ କ୍ଷମା ମାଗିନିଏ। ପୂର୍ବ ମାନ ଅଭିମାନ ସେ ଭୂଲି ପାରେନି। ପାର୍ଥକୁ ହଇରାଣ କରି ମଜା ଦେଖିବାର ଏ ବେଳ। ପାର୍ଥ ଗମ୍ଭୀର ହୁଏ।

ସେ କେବେ ଏପରି ନ ଥିଲା, ଘରକୁ ଅତିଥି ଆସିଲେ ପାର୍ଥର କଥାବାର୍ତ୍ତା, ବ୍ୟବହାରରେ ତ୍ରୁଟି ଦେଖେ ମାୟା, ଲଜ୍ଜିତ ହୁଏ। ସେ ସତରେ ବଦଳି ଯାଉନି ତ!

ଏବେ ଯେପରି ତା’ର ବ୍ୟବସାୟିକ କାର୍ଯ୍ୟ ବ୍ୟତୀତ ଅନ୍ୟାନ୍ୟ କିଛି ଦାୟିତ୍ୱ ନାହିଁ। ଅନ୍ୟାନ୍ୟ କିଛି ଜାଣିପାରେ ନାହିଁ, ବୁଝିପାରେ ନାହିଁ। ‘ବାହାରୁ ଗେଷ୍ଟ ଆସିଛନ୍ତି’ କହି ଫ୍ୟାକ୍ଟରୀ ଗେଷ୍ଟ ହାଉସ୍‌ରେ ଦୁଇ, ତିନି ଦିନ ରହିଯାଏ ସେ। ଘରେ ଥାଇ ମଧ ପାର୍ଥ ନ ରହିବା ଭଳି ଚଳେ।

ମାୟା ଚିନ୍ତା କରିବ ନାହିଁ, ଏ ସବୁରେ ମୁଣ୍ଡ ଖେଳାଇବ ନାହିଁ ଭାବି ମଧ ପାର୍ଥକୁ ସନ୍ଦେହ କରେ। ସେ ଜାଣେ, ପାର୍ଥର ସୁନ୍ଦର ଅଫିସ ଗୃହରେ

ଅନିନ୍ଦ୍ୟା ସୁନ୍ଦରୀ, ସୁଯୋଗ୍ୟା ତରୁଣୀମାନେ ଶୋଭା ବର୍ଦ୍ଧନ କରନ୍ତି। ''କିଏ ଜାଣେ ହୁଏ ତ...।''

ପାର୍ଥ ଉତ୍ତର ଦିଏ, ''ଏ ତ ସାଧାରଣ କଥା, ଘରେ ଯେ ସୁଖ ପାଏ ନାହିଁ, ସେ ବାହାରକୁ ଯିବାରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି?''

''ତେବେ ସେଇଠି ରହିଯାଅ। ଘରକୁ ଆସୁଛ କାହିଁକି?''

''ଚାହୁଁଛ ତ? ବେଶ୍, ଯାହା କହିବ।'' ପାର୍ଥ ମାନିନେଲା ସହଜ ଭାବରେ।

ଏଭଳି ମଣିଷମାନେ କ'ଣ ଭାବନ୍ତି? ନିଜର ସୌଖୀନ୍ ଜୀବନକୁ ନେଇ ଏ ଖେଳ କାହିଁକି? ନିଜ ହାତରେ କାହିଁକି ଆଡେଇ ଦିଅନ୍ତି ସବୁ ସୁଖ ଶାନ୍ତି?

ବର୍ଷଟିଏ ପାଖାପାଖି ହେବ ଏ ଘରଠାରୁ ଦୂରେଇ ରହିଛି ପାର୍ଥ।

ମାୟା ଏ ସବୁ ନେଇ କ'ଣ ଚିନ୍ତା କରେ ସେ ଜାଣିଥିବ। ଅଫିସ୍ ବ୍ୟତୀତ ବାକୀ ସମୟରେ ନିଜକୁ ଭୁଲେଇ ରଖିବାକୁ ଚେଷ୍ଟା କରେ ସେ। ଏବେ ନିଜର ଖୁବ୍ ଯତ୍ନ କରୁଛି। ଭିନ୍ନ ଭିନ୍ନ ପ୍ରକାର ଆଧୁନିକ ପୋଷାକ, ନୂଆ ଫେସନର ଶାଢ଼ି ଗହଣା, ରୂପ ବିନ୍ୟାସ ପ୍ରତି ଏବେ ଅଧିକ ସଚେତନ ସେ। ବନ୍ଧୁମାନଙ୍କ ନିମନ୍ତ୍ରଣ ସାଦରେ ଗ୍ରହଣ କରିବା, ସେମାନଙ୍କୁ ଡାକି ଖୁଆଇବାରେ ସମୟ ଅଣ୍ଟେ ନାହିଁ ତା'ର। ଏବେ ସେ ତା'ର ସମୟ ଅନ୍ୟମାନଙ୍କ ପାଇଁ ଦେଇ ପାରୁଛି। ଅଥଚ ଭିକି! ଯିଏ ତା' ବନ୍ଧୁମାନଙ୍କ ପାଖରୁ ଦୂରେଇ ରହୁଛି!

''ଏ ତ ଖୁସିର କଥା। ପିଲା ବୁଝୁଛି, ପାଠପଢ଼ା ଖେଳ ନୁହେଁ, ଦାୟିତ୍ୱର ବିଷୟ।'' କଥା କହୁ କହୁ ହସି ପକାଏ ମାୟା।

ମୁଁ ତାକୁ ଅବୁଝା ଦୃଷ୍ଟିରେ ଚାହିଁ ରହେ। ଶିକ୍ଷକ ଦୁଇଜଣଙ୍କୁ ଦାୟିତ୍ୱ ଦେଇ ନିଶ୍ଚିନ୍ତ ହେଲେ ଚଳେ ନାହିଁ। ସେମାନେ ନିୟମିତ ଯେଉଁଦିନ ଆସିବା କଥା ଆସୁଛନ୍ତି ତ? କ'ଣ ପଢୁଛି ଭିକି? କ'ଣ ତା'ର ଅସୁବିଧା? ସେଦିନ ସାମୟିକ ଚିନ୍ତିତ ମାୟା କହିପକାଇଲା ବ୍ୟସ୍ତ ହୋଇ, ''ଅଙ୍କ, ବିଜ୍ଞାନରେ ଭିକିଟା ବେଶ୍ ଦୁର୍ବଳ। ଚଉଦ ପନ୍ଦର ବର୍ଷର ପିଲାଟାଏ, କିଛି ଟିକିଏ ଦାୟିତ୍ୱ ଅଛି?''

ଘରେ ପଢ଼ିବି କହି ସ୍କୁଲ ଗଲା ନାହିଁ। ଏକାଠି ଟି.ଭି, ରେଡିଓ, ଟେପ୍-ରେକର୍ଡ଼ର ସହ ପରୀକ୍ଷା ପାଇଁ ପାଠପଢ଼ା!

ହେଇ, ଘର୍ ବାହାରି ଆସି ବାଡ଼ା ପାଖରେ ଠିଆ ହେଲାଣି। କ'ଣ ଦେଖୁଛି ନିବିଷ୍ଟ ଚିତ୍ତରେ? କେଉଁଠି କୁଆଡେ ନ ଥିବା ଖୋଲା ପଡିଆର ଶେଷ ପ୍ରାନ୍ତରେ ଥିବା ଗଛଟି। ପକ୍ଷୀଟିଏ ପତ୍ର ଗହଳରେ ସ୍ୱର ମେଳିଛି। ଆକାଶରେ ଖଣ୍ଡେ ଭସା ମେଘ। ଏ ଗଛର ପକ୍ଷୀ। ଭିକି ଚାହିଁଛି, ପଲକ ପଡୁନି। ପାଖ ରାସ୍ତାରେ ଅନେକ ଗାଡି ଯିବା ଆସିବା କରୁଛି। ଠିକ୍ ସେହି ଗଛଟା ପାଖରେ ନୂଆ ବିଦେଶୀ ଗାଡିଟିଏ ପାର୍କ କଲା। ଭଦ୍ରଲୋକ ଜଣେ ଗାଡି କବାଟ ଖୋଲୁଛନ୍ତି।

''ଆରେ, ଆରେ ଭିକି, କୁଆଡେ ଯାଉଛୁ? ମାମା ଆସିଯିବ ଏବେ।'' ପାହାଚରେ ତରତର ହୋଇ ଓହ୍ଲାଇ ଯାଉଥିବା ଭିକି ପଛକୁ ଚାହିଁ କହିଲା, ''ଆସୁଛି, ଆଣ୍ଟି।''

ମୁଁ ଖୋଲା ବହି ଉପରୁ ମୋ ଚଷମାଟା ଉଠେଇ ନେଇ ସେଇ ଛୋଟ ଛାତର ବାଡା ପାଖକୁ ଆସି ଚାହିଁଲି। ଭିକିର ମାମା ମୋତେ ତା' ଦାୟିତ୍ୱ ଦେଇ ଯାଇଛି। ତା' ଉପରେ ଦୃଷ୍ଟି ଦେବାକୁ ହେବ। ଅବଶ୍ୟ ମୁଁ ଚାହୁଁଥିଲି, ସେ ବାହାରକୁ ଯାଇ ସାଙ୍ଗମାନଙ୍କ ସଙ୍ଗେ ଖେଳୁ। ପିଲାଟା ତା' କଲା ନାହିଁ, ଏବେ ସନ୍ଧ୍ୟା ଅନ୍ଧାର ହେବାକୁ ଅଳ୍ପ ସମୟ ଅଛି। ସେମାନେ କେହି ନାହାଁନ୍ତି। ଘରକୁ ଗଲେଣି। ଏବେ ଦୌଡୁଛି ତଳକୁ!

କିଏ ସେଠି? ପାର୍ଥ! ଦୁଇବାହୁ ପ୍ରସାରି ଠିଆ ହୋଇଛି। ଗଛ ପାଖରୁ ପଡିଆ ମଝିକୁ ଆଗେଇ ଆସିଛି କିଛି ବାଟ। ପବନ ବେଗରେ ଧାଇଁଛି ଭିକି। ଅନ୍ୟ ରାସ୍ତାରୁ ମାୟା ଆସୁଛି ବୋଧ ହୁଏ। ଏଡ ତା'ର ଗାଡି ଭଳି ଦିଶୁଛି।

ମୁଁ ବାଡା ପାଖରୁ ଚାଲି ଆସିଲି। ବାହାର କବାଟ ବନ୍ଦ କରିଛି ଭିକି। ମୋତେ ଖୋଲିବାକୁ ହେବ। ମାୟା ଚାବିନେଇ ନାହିଁ।

ଏ ସମୟରେ ମାୟା ମୋତେ ନ ଦେଖୁ। ସେମାନଙ୍କ କଥାବାର୍ତ୍ତା ମୁଁ ନ ଶୁଣେ। ଖୁସି ହେଉ ବା ଅପମାନ ହେଉ, ତା' ମୋ ଆଖିରେ ନ ପଡୁ। ମୁଁ, ଆମେ କେହି ତାକୁ ସୁଖୀ କରାଇ ପାରିବୁ ନାହିଁ। ତା' ସମସ୍ୟା ତୁଟାଇ ପାରିବୁ ନାହିଁ।

ମୁଁ ପାହାଚରେ ଓହ୍ଲାଇ ବାହାର କବାଟ ପାଖକୁ ଗଲି। ତଳେ କଲିଂବେଲ୍‌ରେ ଘନ ଘନ ଶବ୍ଦ।

ବାହାର ପାଖ ଦ୍ୱାର ଖୋଲି ମୁଁ ଚମକି ପଡିଲି। ମାୟାର ଏ ଖଡ୍‌ଗଧାରିଣୀ

ମୂର୍ତ୍ତି ମୁଁ ଅନ୍ତତଃ କେବେ ଦେଖି ନଥିଲି।

ଭିକିକୁ ଘୋଷାରି ଘୋଷାରି ସେ ଘର ଭିତରକୁ ନେଇ ଆସିଲା। ଅନ୍ୟ ହାତରେ କବାଟଟା ବନ୍ଦ କରୁ କରୁ କହିଲା, "ସେଇ ପଡିଆକୁ ସବୁଦିନ ସନ୍ଧ୍ୟା ପରେ କାହିଁକି ଏ ଯାଉଛି? ପଚାର ତାକୁ! ଦେଖ୍ ତ, ମୋତେ ଲାଲ୍ ଆଖିରେ ଚାହିଁଛି।"

ଭିକି ହିଂସ୍ର ଦିଶୁଥିଲା। କି ସୁନ୍ଦର ତା' ଶାନ୍ତ, ସୌମ୍ୟ ଚେହେରା! ସେହି ଉଜ୍ଜ୍ୱଳ ଚକ୍ଷୁ ଦୁଇଟି ଏବେ ସତେ କି ବିଦ୍ରୋହୀ ହୋଇ ଉଠିଛି।

ହଁ, ତୁମେ ମନା କଲେ ମୁଁ କାହିଁକି ଶୁଣିବି? ମୁଁ ଯିବି। ଦେଖିବା ଭଲା କିମିତି ନ ଯିବି। ନିଶ୍ଚୟ ଯିବି, ତୁମେ ମୋର କ'ଣ କରିବ?

ଭିକି ତା' ମାମାକୁ ଚାହିଁଛି ବଡ ବଡ ଆଖିରେ, ଜୋରରେ ଫଁ ଫଁ କରି ନିଶ୍ୱାସ ନେଉଛି।

"କ'ଣ ଏମିତି ଚାହିଁଛୁ ରାକ୍ଷସ ଭଳି? ଗୁଣ କାଢୁଛି! ଯା, ବାହାରିଯା ଏ ଘରୁ। ଯା... ଗଲୁ।"

ଗୋଡରୁ ହିଲ୍ ଯୋତା କାଢି ପାଗଳୀଙ୍କ ଭଳି ତାକୁ ପିଟିବାକୁ ଲାଗିଛି ମାୟା।

ମୁଁ ସହି ପାରିଲିନି, ଠେଲାଖାଇ ଭିକିକୁ ଛଡେଇ ନେଲି। କହିଲି, "ନା, ସେ କୁଆଡେ ଯାଇନି। ସାଙ୍ଗମାନଙ୍କ ପାଖକୁ ଯା' କହିଲେ ବି ଯାଇ ନାହିଁ। ଦିନ ସାରା ସେଇ ଘରେ ବସି ପଢୁଛି।"

ଭିକି ମୋ କୋଳକୁ ଆଉଜି ଠିଆ ହୋଇଛି। ତା' ମାମାକୁ ରୁଦ୍ର ଚକ୍ଷୁରେ ସେଇଭଳି ଚାହିଁଥାଏ। ହଠାତ୍ ଧପ୍ ଧପ୍ କରି ପାହାଚରେ ଉଠି ପଢାଘରେ ପଶି କବାଟ ବନ୍ଦ କରିଦେଲା।

ମାୟା ମୁଣ୍ଡରେ ହାତ ଦେଇ ଥକା ମାରି ବସି ପଡିଲା ସେଇଠି। ମୁଁ ତାକୁ ବୁଝେଇଲି ନାହିଁ। ଭିକିର ଦାୟିତ୍ୱ ଠାକୁରଙ୍କୁ ଦେଇ ରୋଷେଇ ଘରେ ପଶି ଚା' ଦୁଇ କପ୍ ଆଣିଲି। ମାୟା ହାତକୁ ଚା' କପ୍‌ଟା ବଢେଇ ଦେଇ ପାଖ ସୋଫାରେ ବସି ନୀରବରେ ଚା' ପିଇବାରେ ମନ ଦେଲି।

ଏ ସବୁ ଭଲ ହେଉ ନାହିଁ। ଆହା, ନିଜ ହାତରେ ପିଲାଟାକୁ ନଷ୍ଟ କରି ଦଉଚ! ଏମିତି କିଛି ଭାବୁଥିଲେ ବି ସ୍ଥିର କଲି ଏବେ ତାକୁ କିଛି

କହିବି ନାହିଁ। ସେ ନିଜେ ବୁଝୁ। ମୋତେ ଯାହା ଚାହୁଁଛି, ତା' ମନ କଥା କହୁ। ମୁଁ ନୀରବ ରହିବା ଭଲ। ମୁଁ କିଏ ? କାହିଁକି ସେ କାହା କଥା ଶୁଣିବ ? ତା'ର କ'ଣ ବୁଦ୍ଧି ନାହିଁ? ତା' ବ୍ୟକ୍ତିଗତ ବ୍ୟାପାରରେ ଅନ୍ୟ କେହି ମୁଣ୍ଡ ଖେଳାଇବା ଠିକ୍ ନୁହଁ।

ଆଉ ମାତ୍ର ତିନିଦିନ। 'ଅଲ ଇଣ୍ଡିଆ ରାଇଟର୍ସ କନ୍‌ଫରେନସ୍' ଶେଷ ହେବା ପରେ ଦୁଇଦିନ ଅଧିକ ମୋତେ ରହିବାକୁ ହେବ। ଫେରିବାର ରିଜର୍ଭେସନ ସେଇଭଳି କରିଛି ମାୟା। ଏତକ ଦିନ ମୋ ପାଇଁ ବହୁତ ବେଶୀ।

''କ'ଣ ଭାବୁଛୁ ?'' ମାୟା ମୋତେ ପଚାରୁଛି।

''ତୁ କଷ୍ଟ ପାଉଛୁ, ମୋତେ ବାଧୁଛି।''

''ସେ ମୋର ଭାଗ୍ୟ। ଅନ୍ୟ ଉପାୟ ନାହିଁ।''

ସେଦିନ ଆଉ କିଛି କଥାବାର୍ତ୍ତା ହେଲା ନାହିଁ ଏ ସଂପର୍କରେ। ରାତିରେ ଭିକି ଆସି ଖାଇବା ଟେବୁଲ୍ ପାଖରେ ଚୁପ୍‌ଚାପ୍ ଠିକ୍ ତା' ନିଜ ଚଉକିରେ ବସି ଅନ୍ୟ ଦିନ ଭଳି କ'ଣ ଖଣ୍ଡେ ବହି ଧରି ଖାଇବାରେ ମନ ଦେଲା।

ଆମେ ତିନିଜଣ ଖାଉଥିଲୁ। ମଝିରେ ମଝିରେ ''ଆଉ ଟିକିଏ ପନିର ଦିଏ, ଖଣ୍ଡେ ପରଟା ଖାଇଲୁ ?'' ମୋତେ ଏଭଳି କିଛି କଥା ବ୍ୟତୀତ ମାୟା ଆଉ କିଛି କହୁ ନଥିଲା। ଭିକିର ପ୍ଲେଟରେ ରାଜ୍‌ମା ଆଉ ଚାମଚେ ଦେବାକୁ ଚାହିଁବାରୁ ସେ ପ୍ଲେଟ୍ ଉଠାଇ ରୋଷେଇ ଘରେ ରଖିବାକୁ ଚାଲିଗଲା। ତା' ଖାଇବା ଶେଷ ହୋଇଥିଲା।

ଅନ୍ୟଦିନ ହୋଇଥିଲେ ମାୟା ଅଭିଯୋଗ କରି ମୋତେ କହିଥାଆନ୍ତା, ''ଦେଖ୍ ତ, ଯେତେ ଯାହା ପଚାରିଲେ ଯା ପାଟିରେ କଥା ନାହିଁ। ଘରକୁ ଆସିଲେ ମୁଁ ବକ୍‌ବକ୍ କରୁଥିବି। ଯେ ବୁଢ଼ୀଟାଏ ଭଳି ଚୁପ୍‌ଚାପ୍ ବସିଥିବ। କିରେ କ'ଣ ପଚାରୁଚି ଶୁଣି ପାରୁନୁ ?''

ଭିକି ସଂକ୍ଷିପ୍ତ ଉତ୍ତର କିଛି ଦେଇ ବହିରେ ମନ ଦିଏ।

ଆଜିର ପରିସ୍ଥିତି ଅନ୍ୟ ପ୍ରକାରର।

ସେଇ ବନ୍ଦ କୋଠରୀ, ତା' ପଢ଼ାଘରେ ତପସ୍ୟା କଲା ଭଳି ବସି ରହୁଛି ଭିକି। ଏ ଦୁଇ ଦିନ ହେଲା ଏ ପୁଣି କି ପରିବର୍ତ୍ତନ ? ଦିନ ସାରା

ସାଙ୍ଗ ପିଲାଙ୍କ ଖେଳର ଶବ୍ଦ ତାକୁ ଟିକିଏ ବି ଛୁଇଁ ପାରୁନାହିଁ। ଏମିତିକି ଛୋଟ ଛାତର ବାଡ଼ା ପାଖକୁ ଯିବାରେ ତା'ର ସେ ଆଗ୍ରହ ଦେଖିଲି ନାହିଁ। ସେମିତି ପାଠ ପଢ଼ା ସହ ଟି.ଭି ଦେଖା, ମ୍ୟୁଜିକ୍ ଶୁଣିବା ସ୍ଲୋ ଭଲ୍ୟୁମରେ ଇତ୍ୟାଦି ପୂର୍ବ ଅଭ୍ୟାସ ଠିକ୍ ଚାଲିଛି, ଅଥଚ ଠିକ୍ ସନ୍ଧ୍ୟା ପୂର୍ବରୁ ଦେହରେ ଆଉ ଖଣ୍ଡିଏ ସାର୍ଟ ବଦଳେଇ ପିନ୍ଧିନେଇ କବାଟ ଖୋଲି ବାହାରି ଯାଉଥିଲା ଭିକି। ମାୟା ଫେରିଲେ ମଧ୍ୟ ବେଶ୍ ବିଳମ୍ବରେ ସେ ଫେରୁଥିଲା ରାତି ଖାଇବାର ଅଳ୍ପ ସମୟ ପୂର୍ବରୁ।

ଏବେ ବାହାରୁ ଆସିବା ପରେ ତା' ଆଖିରେ ଥିଲା ଶାନ୍ତ ଚାହାଣୀ ଏବଂ ତା' ମାମା ପାଖରେ ସେ ଖୁବ୍ ଗେହ୍ଲା ହେଉଥିଲା। ଅଦ୍ଭୁତ ଭାବରେ ହୁଁ ହାଁ ଶବ୍ଦ କରି, ମୁହଁରେ ବିଭିନ୍ନ ଭାବ ଭଙ୍ଗୀ ଦେଖାଇ ସର୍କସ୍‌ର ଜୋକର ଭଳି ମନେ ହେଉଥିଲା ସେ।

ମାୟା ଖୁସି ହେଉଥିଲା କି ଦୁଃଖ କରୁଥିଲା ତା' ମୁଁ ଜାଣି ପାରୁ ନ ଥିଲି। ସେ କିନ୍ତୁ ପୂର୍ବ ଭଳି 'ମୋ ଧନ, ମୋ ବାପା, ଯା'ରେ ବହି ସଜାଡ଼ି ରଖିଦେ। ତୋ ପ୍ୟାଣ୍ଟ୍, ସାର୍ଟ, ଜୋତା ଠିକ୍ ଅଛି ତ?' ଏଭଳି ତା' ପୁଅକୁ କହୁଥିଲା। ଭିକି ବିକୃତ ସ୍ୱରରେ ଯାହା ତାକୁ ଉତ୍ତର ଦେଉଥିଲା, ତା' ହେଉଛି ''ଯାଉଛି, ମାମା।''

ସେତେବେଳେ ତା' ସୁନ୍ଦର ମୁହଁଟା ଅଦ୍ଭୁତ ଦିଶୁଥିଲା, ସ୍ୱର କଥା ତ ଛାଡ଼।

ମାୟା ନିର୍ଜୀବ ମଣିଷ ଭଳି ହସୁଥିଲା। ଭିକି ହୁଁ, ହାଁ କରି ବିଭିନ୍ନ ଭାବ ଭଙ୍ଗୀରେ ତା' ମାମା ସହ କଥାବାର୍ତ୍ତା କରୁଥାଏ। ମୁଁ ମୋ ବହି ଖଣ୍ଡକରେ ମନ ଦେବା ବ୍ୟତୀତ ଅନ୍ୟରାସ୍ତା ଦେଖି ପାରୁ ନ ଥିଲି। ଏ ରାତି ଶେଷ ପରେ ଦିନଟିଏ ରହିବି ଏଠି। ମୋ ସହରରେ ପହଞ୍ଚିବା ପରେ ଧୀରେ ଧୀରେ ନିଷ୍ପ୍ରଭ ହୋଇଯିବେ ମାୟା, ଭିକି, ପାର୍ଥ, ସେମାନଙ୍କର ଅଜସ୍ର ସୁଖ ଦୁଃଖର କଥା।

ସକାଳେ ଉଠି ମାୟା କହିଲା, ''ଆଜି ମୁଁ ଅଫିସ ଯାଉ ନାହିଁ। ଚାଲ, ଅର୍ଲି ଲଞ୍ଚ୍ ପରେ ତୋତେ ଏ ସହରର ଆର୍ଟ ଗ୍ୟାଲେରୀ ସବୁ ବୁଲେଇ ଦେଖେଇବି। ତା'ପରେ ସପିଙ୍ଗ୍ କରିବା। ଏତେ କମ୍ ଦିନ ରହିଲୁ... ଠିକ୍

• ଅଛି, ମୁଁ ବାଧ କରିବି ନାହିଁ।''

ମୁଁ ତା' ଦୀର୍ଘଶ୍ୱାସର ସ୍ୱର ଶୁଣିଲି। ମୋର ଉତ୍ତର ଦେବାର କିଛି ନ ଥିଲା। ମୋ ଘର, ସ୍ୱାମୀ, ପିଲାମାନଙ୍କୁ ଛାଡି ଅଧିକା ଦିନେ ଦୁଇଦିନ ରହିବାରେ ମୋର ଆପତ୍ତି ନ ଥିଲା। ମାତ୍ର ଏଠୁ ଯିବାପାଇଁ ଏତେ ଶୀଘ୍ର ରିଜର୍ଭେସନ ମିଳିବ ନାହିଁ।

ଅପରାହ୍ନରେ ଫେରିଆସି ଅଳ୍ପ ସମୟ ବିଶ୍ରାମ ନେଇଛୁ କି ନାହିଁ, ମାୟା କହିଲା, ''ସେଇ ଦିନରୁ ମନଟା ଭଲ ଲାଗୁନି। ଚାଲ୍, ତଳକୁ ଯାଇ କିଛି ସମୟ ଚାଲି ଚାଲି ବୁଲିବା।''

ଅଳ୍ପ ଦୂରର ସେଇ ପଡିଆ। ରାସ୍ତାରୁ ସେଇଆଡେ ଆମେ ଆଗେଇଲୁ। ଅନ୍ଧାର ହୋଇ ଆସୁଛି। ଏ ପର୍ଯ୍ୟନ୍ତ ରାସ୍ତାର ଲାଇଟ୍ ଜଳିନାହିଁ। ତଥାପି ଦିନର ଆଲୁଅ ସମ୍ପୂର୍ଣ୍ଣ ପୋଛି ହୋଇ ଯାଇନାହିଁ। ଆମେ ଧୀରେ କଥାବାର୍ତ୍ତା କରି ଆଗେଇଲୁ।

''କିଏ... ସେଠି ? ଦେଖିଲୁ। ଭିକି ?''

''ହଁ, ଏ ଭିକି। ବିକ୍ରମ।'' ମୁଁ ପାଟି କରି ଉଠିଲି। ମଣିଷକୁ ନ ଦେଖିପାରିବା ଭଳି ଅନ୍ଧାର ହୋଇ ନାହିଁ। ମୁଁ ତାକୁ ସ୍ପଷ୍ଟ ଦେଖିପାରୁଛି। କେତେବେଳେ ଚାଲୁଛି ତ କେତେବେଳେ ଦୌଡୁଛି। ମନକୁ ମନ କଥାକହି ହସି ପକାଉଛି। 'ଏଠି କେହି ନାହିଁ, କିଛି ବାଧା ନାହିଁ, ମୁଁ ଦୌଡିବି, ନାଚିବି, ଖେଳିବି, ଯାହା ଖୁସି ତା' କରିବି।'

ସେଇ ଅଦ୍ଭୁତ ବ୍ୟବହାର, ହୁଁ, ହାଁ, ଡିଆଁ ଡେଇଁ। ଏଥର ପକ୍ଷୀ ଉଡ଼ିବା ଭଳି ହାତ ଖୋଲି ପଡ଼ିଆ ମଝିରେ ବଡ଼ ଗୋଲ ଚକର୍ କାଟି ଖୁବ୍ ଜୋର୍‌ରେ ଦୌଡ଼ିବାକୁ ଆରମ୍ଭ କରିଛି ଭିକି ?

''ଏ କ'ଣ ହଉଚି, ଭିକି ?'' ମାୟା ଚିତ୍କାର କରି ଉଠିଲା। ଅଧିକଦ୍ରୁତ ଗତିରେ ସେ ଘୂରିବାରେ ଲାଗିଛି। ଆମ କାହାର ସ୍ୱର ତାକୁ ଛୁଇଁ ପାରୁନାହିଁ।

ମାୟା ଧାଇଁ ଯାଉଛି ପଡିଆ ମଝିକୁ। ସେ ପାଖରୁ ଧାଇଁ ଆସୁଛି ପାର୍ଥ। ସେମାନଙ୍କ ଦୃଷ୍ଟିରେ ଆତଙ୍କ, ଅସହାୟତା। ସେମାନେ କେହି ତାକୁ ଧରି ପାରୁ ନାହାନ୍ତି। ହୁଏତ ପାର୍ଥର ସେହି ବିଦେଶୀ କମ୍ପାନୀ ସହ ଚାଲିଥିବା ଚୁକ୍ତିର କଥାବାର୍ତ୍ତା ଶେଷ ହୋଇ ଯାଇଛି। ସଫଳତାର ଖୁସିରେ ବ୍ୟସ୍ତ ରହି ଦୁଇଦିନ

ପରେ ଆସିଛି ସେ ପୃଥକୁ ଦେଖିଯିବାକୁ। ଅଥଚ ଅନ୍ୟ ଦିନ ଭଳି ବାପାଙ୍କ କୋଳକୁ ଧାଇଁ ଯାଉଥିବା ସେ ଦିନର ବିକ୍ରମ ଏ ନୁହଁ। ପାର୍ଥକୁ, ମାୟାକୁ, ସେମାନଙ୍କ ବ୍ୟସ୍ତ, ବିବ୍ରତ ଭାବକୁ ଭ୍ରୂକ୍ଷେପ ନ କରି ସେମିତି ଚକ୍ର କାଟି ଘୁରୁଛି ଭିକି, ପାର୍ଥ ଓ ମାୟାର ବୁନିୟାଦ୍, ଭବିଷ୍ୟତ !

ମୁଁ ବ୍ୟସ୍ତ ହୋଇ ଆଉଥରେ ପାଟି କରି ଉଠିଲି, ''ଭିକି ? ବିକ୍ରମ ?''

ସେଇଠି ପଡିଆର ଘାସରେ ଲୋଟି ଯାଉଥିବା ଭିକିର ଚେତନାଶୂନ୍ୟ କୋମଳ ଶରୀରକୁ କୋଳେଇ ନେଇ ମୁଁ ସ୍ଥାଣୁ ହୋଇ ବସି ରହିଥିଲି କେତେ ମୁହୂର୍ତ୍ତ ପର୍ଯ୍ୟନ୍ତ। □□

ସୁଚରିତା, ଜନ୍ମଦିନ ବିଶେଷାଂକ, ୧୯୯୩

# ନିଶୀଥ ସୂର୍ଯ୍ୟ

ଏକମାତ୍ର ଆଲୋକ ଦେଖାଯାଉଛି ଅଳକାନନ୍ଦାର ଶୋଇବାଘରକୁ ଲାଗିଥିବା ସେଇ ଛୋଟ କୋଠରୀ ମଧ୍ୟରୁ, ଯେଉଁଠାରେ ଏହି ଅଳ୍ପ ସମୟ ପୂର୍ବରୁ ସେ ବସିଥିଲା । ଏବେ ବି ଅସଜଡ଼ା ହୋଇ ରହିଛି ସେ ବ୍ୟବହାର କରିଥିବା କିଛି କସ୍‌ମେଟିକ୍ସ । ଡ୍ରେସିଂଗାଉନ୍‌ଟା ଟଙ୍ଗା ହୋଇଛି ପାଖ ହୁକ୍‌ରେ । ହ୍ୟାଙ୍ଗରରୁ ନେଇଥିବା ଶାଢ଼ି, ମ୍ୟାଚିଂ ଶାୟା, ବ୍ଲାଉସ ସେ ଯତ୍ନର ସହ ପିନ୍ଧି ବାହାରିଯାଇଛି । ଛୋଟ କୋଠରୀ ସାରା ରଜନୀଗନ୍ଧାର ସୁଗନ୍ଧ ସହ ହାଲକା ବିଦେଶୀ ପରଫ୍ୟୁମ୍‌ର ବାସ୍ନା । ଫୁଲଦାନୀରେ ରଜନୀଗନ୍ଧାର ସ୍ତବକ । ପାଖରେ ଫଟୋଫ୍ରେମ୍‌ରେ ତୁଷାର, ଅଳକାନନ୍ଦାଙ୍କ ଫଟୋ । ଗତବର୍ଷ କାଠମାଣ୍ଡୁ ଯାଇଥିବା ବେଳେ ଜଣେ ପର୍ଯ୍ୟଟକଙ୍କୁ ଅନୁରୋଧ କରିବାରୁ ପ୍ରାକୃତିକ ପରିବେଶରେ ଏଭଳି ସୁନ୍ଦର ଫଟୋଟିଏ ଉଠାଯାଇ ପାରିଥିଲା ।

ଅଳକାନନ୍ଦା ସୁନ୍ଦର ଜିନିଷମାନଙ୍କୁ ଭଲପାଏ । ପ୍ରକୃତିର ସୌନ୍ଦର୍ଯ୍ୟ ଦେଖି ହଜିଯାଇଥିବା ସମୟରେ ସଂସାରଯାକର ଦୁଃଖ ଦୁର୍ଦ୍ଦଶା ମନେପକାଇ ବିମର୍ଷ ହୋଇଉଠେ ।

ତୁଷାର ବସ୍ତୁବାଦୀ ବିତ୍ତବାନ୍ ମଣିଷଟିଏ । ସେ ନିଜସୁଖରେ ବଞ୍ଚିବାକୁ ଚାହେଁ । ଉପଭୋଗ କରିବା ପାଇଁ ବ୍ୟସ୍ତ ଜୀବନରୁ ସମୟ କରି ଧାଇଁଆସେ ବାହାରକୁ । ନୂଆ ସହର, ଅଜଣା ଜାଗା, ସକାଳବୁଲା ସମୟରେ ହୋଟେଲର ପଛପାଖ

ରାସ୍ତାଦେଇ ଜଙ୍ଗଲ ମଧ୍ୟରେ କିଛିଦୂର ଆଗେଇଗଲେ ଛୋଟ ଛୋଟ ଗାଁ କେତୋଟି। ସେସବୁର ଖବର ନେଇଛି ଅଳକାନନ୍ଦା। ଏବଂ ତୁଷାରକୁ ବାଧ୍ୟକରେ ସେଇ ରାସ୍ତାରେ ଚାଲିବା ପାଇଁ। କହେ, ''ଦେଖିବା କେମିତି ଚଳୁଛନ୍ତି ସେମାନେ। କେତେ ସୁଖ, କେତେ ଦୁଃଖ ନିଜ ଆଖିରେ ଦେଖି ଆସିବା !''

ଏବେ ଅଳକାନନ୍ଦା ଶୋଇବାଘରର ଖଟ ପାଖରେ ଠିଆହୋଇଛି। ବେଡ୍‌ସୁଇଚ୍ ଅନ୍ କରି ତୁଷାରକୁ ଉଠେଇବ କି ନାହିଁ ଭାବୁଛି। ନିଷ୍ପ୍ରଭ ନୀଳ ଆଲୋକରେ ସୁନ୍ଦର, ଶାନ୍ତ, ସ୍ନିଗ୍ଧ, କବିତାର ପଂକ୍ତି କେତୋଟି ପରି ମନେହେଉଛି ଅଳକାନନ୍ଦା। ଦୁଇଟି ବିବାହିତା ଝିଅ, ଗୋଟିଏ କିଶୋର ପୁଅର ମା' ସେ। ତା' ହାତରେ ଗଢା ସଂସାର। ତୁଷାର ବିନା ପାଦେ ଆଗକୁ ଯାଇ ହେବନାହିଁ। ଗଲେ ବିପଦ ସଂକେତ !

ସ୍ଥାନୀୟ ଯୁବକ କେତେଜଣ ନିମନ୍ତ୍ରଣ କରିଯାଇଛନ୍ତି 'ଗଜଲ୍‌ନାଇଟ୍' ପାଇଁ।

''ପାଖରେ ଖୋଲା ପଡିଆରେ ବସିବାର ବ୍ୟବସ୍ଥା କରିଛୁ। ସମସ୍ତେ ଭଲରେ ଦେଖିପାରିବେ, ଶୁଣିପାରିବେ, ନିଶ୍ଚୟ ଆସିବେ ଆପଣମାନେ।'' ସେମାନଙ୍କ ଅନୁରୋଧ।

ବିନାଦ୍ୱିଧାରେ ସର୍ବୋଚ୍ଚ ଦାମ୍‌ର ଟିକେଟ୍ ଦୁଇଟି ମାଗିନେଇଥିଲେ ତୁଷାର। ବନ୍ୟା ସାହାଯ୍ୟ ପାଣ୍ଠିକୁ ଅନୁଦାନ। ଏ ସବୁରେ ସେ କୃପଣ ନୁହନ୍ତି।

''ଆମେ ଯିବା ସେଦିନ,'' ଅଳକାନନ୍ଦା ଆଗ୍ରହରେ କହିଲା।

''ନା, ଆଦୌ ଯିବା ଉଚିତ୍ ନୁହେଁ।'' ଜଣେ ବୟସ୍କ ମୁରବୀ ଭଳି ଉତ୍ତର ଦେଲା ତୁଷାର।

''ଯେତେସବୁ ବାଜେ ଯାଗାକୁ ତୁମର ଯିବାକୁ ଇଚ୍ଛା।''

''ବାଜେ ଯାଗା !''

''କଥା ବଢ଼ାଅ ନାହିଁ। ଯାବତୀୟ ବେକାର ଲୋକଙ୍କ ଧନ୍ଦା ସେସବୁ। ରାତିଅଧିଆ ଆଡ୍ଡା।''

''ତୁମ କ୍ଲବ୍‌ବାଲା କ'ଣ କରନ୍ତି ? ଭୁଲି ଯାଉଛ ? ରାତି ଅଧରେ ଫେରିଥିଲେ ଆମେ ! ସେମାନେ ଭଦ୍ରଲୋକ ତ ?''

''ନନ୍ଦା !'' ତୁଷାର ରାଗରେ ଅସ୍ଥିର ହୋଇ ଉଠିଲା। ''କାହାକୁ କାହାସହ ତୁଳନା କରୁଚ ?''

''ସେଠି ସେଦିନ ମ୍ୟୁଜିକ୍ ନାଇଟ୍ ଅପେକ୍ଷା ଖାଦ୍ୟ ପାନୀୟରେ କେତେ

ଟଙ୍କା ଉଡେଇଥିଲ ତୁମେ ? ରାଗୁଚ କାହିଁକି ? ତୁଳନା କରୁନାହିଁ। ସତକଥା କହୁଚି।''

କିଛି ସମୟ ତୁଷାର, ଅଳକାନନ୍ଦା ଦୁହେଁ ପରିସ୍ଥିତି ବୁଝି ନୀରବ ହୋଇଗଲେ। ତୁଷାର ବଗିଚାରେ ବୁଲିବାକୁ ବାହାରିଗଲା। ଅଳକାନନ୍ଦା ପୁଅ, ଝିଅଙ୍କୁ ଚିଠିଲେଖି ବସିଲା।

''କ'ଣ ଲେଖୁଛ ଏତେ ? ଦିଅ ପୋଷ୍ଟ କରିଦେବି।'' କେତେବେଳେ ବାହାରୁ ଆସି ତୁଷାର ତା' ପାଖରେ ଠିଆହୋଇ ରହିଛି ଜାଣିପାରି ନ ଥିଲା ଅଳକାନନ୍ଦା।

''ଆରେ, ଏତେ ଉପଦେଶ କ'ଣ ଦରକାର ? ସୀମା, ରୁମାଙ୍କୁ ଆସିବାକୁ କାହିଁକି ଲେଖିଲ ? ମୋତେ ନ ପଚାରି... ?''

ଅଳକାନନ୍ଦା ହାତରୁ ଚିଠି ତିନୋଟି ନେଇ ଚିରିଦେଲା ତୁଷାର।

ଘରେ ଅଧିକ ସମୟ ରହିଲେ ତୁଷାର ଅତିଷ୍ଠ ହୋଇଉଠେ।

''ଓଃ, ଏଇଟା କ'ଣ ପାନଦୋକାନ ନା ଶସ୍ତା ରେଷ୍ଟୁରାଣ୍ଟ୍ ? ସବୁବେଳେ ଟି.ଭି. ଚାଲୁଚି ନାହିଁ ତ ଗୀତ ଶୁଣାହଉଚି ? ମଣିଷକୁ ପାଗଳ କରି ଛାଡିବ ତୁମେ। କାହାକୁ ପୁଣି ଫୋନ୍ ? ଫୋନ୍‌ଟା ଗପିବାପାଇଁ ନୁହେଁ। ଏତେ ସମୟ ଏନ୍‌ଗେଜ୍ ରଖିବା ଠିକ୍ ତ ?''

ଅଳକାନନ୍ଦା ତଥାପି ମୁହଁ ଖୋଲି ନାହିଁ। ତୁଷାରକୁ କହିବାକୁ ଇଚ୍ଛାକରି ମଧ୍ୟ କହିନାହିଁ ଯେ ସେ କାମ କରୁଥିବା ଅନୁଷ୍ଠାନମାନଙ୍କ ପାଇଁ ସ୍ୱତନ୍ତ୍ରଭାବରେ ଫୋନ୍‌ଟି ଅଣାଇଛି ଏବଂ ସେଇ ଦରକାରୀ କଥାବାର୍ତ୍ତା ହିଁ କରୁଛି।

ତୁଷାର ମଧ୍ୟ ଜାଣିଛି ଏ ନମ୍ବରରେ ପୁଅ, ଝିଅ, ବନ୍ଧୁ ବାନ୍ଧବ ଅନ୍ୟାନ୍ୟ କେହି ଆଦୌ ଫୋନ୍ କରନ୍ତି ନାହିଁ। ଅଯଥାରେ ଅଳକାନନ୍ଦାର ଷ୍ଟଡିରୁମ୍‌ରେ ପହଞ୍ଚି ଏସବୁ ଯେ କହିବାର ଆବଶ୍ୟକ ନ ଥିଲା, ସେସବୁ ବୁଝିବା ଅବସ୍ଥାରେ ସେ ନ ଥିଲା ସେତେବେଳେ।

ଅନ୍ୟଦିନେ-

ଅଳକାନନ୍ଦା ସହର ବାହାରକୁ ଯାଇ ଫେରିବାରେ ବିଳମ୍ବ କରିଛି। ସେଦିନ ଆସିବାର ନ ଥିଲା ତୁଷାରର। ବମ୍ବେରେ ସାତଦିନର କାମ। ଅଥଚ କାମ ଶେଷ କରି ସେ ଦୁଇଦିନ ପୂର୍ବରୁ ଫେରିଆସିଛି। ତୁଷାର ବାହାଦୁର ହାତରୁ ଚାବି ନେଇ ପଚାରିଛି, ''ମା' କୁଆଡେ ଗଲେ।?''

''ଜାଣେ ନାଇଁ, ସାବ୍। ଇଭିନିଂ ଆଗରୁ ଫେରି ଆସନ୍ତି ତ।''

ତୁଷାର ଚାବିଖୋଲି ଘର ଭିତରକୁ ପ୍ରବେଶ କଲା। ପରିଷ୍କାର ପରିଚ୍ଛନ୍ନ ସୁସଜ୍ଜିତ କୋଠରୀସବୁ। ଅଥଚ ଅଳକାନନ୍ଦା ନାହିଁ।

ପୁଞ୍ଜୀଭୂତ ରାଗ ଅସନ୍ତୋଷରେ କୁହୁଳି ଉଠିଲା ତୁଷାର। ବିବାହର ପଚିଶ ବର୍ଷ ପରେ ସ୍ୱାମୀର ଇଚ୍ଛା ଅନିଚ୍ଛା ବୁଝିପାରୁ ନ ଥିବା ସ୍ତ୍ରୀକୁ ସେ ସୁଖୀ କରିପାରିବ କିପରି ?

ଅଧା ଅନ୍ଧାରରେ ଝରକା ରେଲିଂ ଧରି ଠିଆହୋଇଛି ଅଳକାନନ୍ଦା। ସେ କ'ଣ କାନ୍ଦୁଛି ? ସୁଖକୁ ସୁଖ ଆଖିରେ ନ ଦେଖିପାରିଲେ କାନ୍ଦିବ ନାହିଁ ଆଉ କ'ଣ କରିବ ?

''କାହା ଗାଡିରେ ଫେରୁଛ ଏତେ ରାତିରେ ? କିଏ ସେମାନେ ସବୁ ? କୁଆଡେ ଯାଇଥିଲ ?'' ପାଞ୍ଚଦିନର ଖବରକାଗଜ ଏକାଠି କରି ଦେଖୁଛି ତୁଷାର। ଅଳକାନନ୍ଦାର ପାଦ ସ୍ଥିର ହୋଇଗଲା। ସେ ଧୀରେ କହିଲା,

''ଶଂଭୁନାଥପୁର। ରାସ୍ତା ଖରାପ ଥିଲା। ଡେରି ହେଇଗଲା।''

''ସମାଜସେବା ? ସେଇ ବଧୂହତ୍ୟା ମାମଲା ? ଜାଳିଦେଲେ ନା ଆତ୍ମହତ୍ୟା କରିଛି ? କିଛି ପ୍ରେମ, ଫେମ ବ୍ୟାପାର ହେଇଥିବ ମ ?''

''ନା.. ନା ନିଜେ ସେ ମୃତ୍ୟୁକାଳୀନ ଜମାନବନ୍ଦୀ ଦେଇଛି।''

''ଆଚ୍ଛା, ତୁମେ କ'ଣ ଯୌତୁକ ଆଣିଥିଲ ?'' ନିଜେ ଯୌତୁକ ନେବାକୁ ମନାକରିଥିବା ତୁଷାର ପ୍ରାୟ ଅଧିକାଂଶ ବେଳେ ଏଇ ଗୋଟିଏ କଥା ପଚାରେ ଅଳକାନନ୍ଦାକୁ।

''ଅଯଥା କଥାର ଉତ୍ତର ମୁଁ ଦେବି ନାହିଁ।'' ଦୃଢଭାବରେ କହିଲା ଅଳକାନନ୍ଦା।

''ଅଲବତ୍ ଉତ୍ତରଦବ ମୁଁ ଯାହା ପଚାରିବି।'' ଗର୍ଜିଉଠିଲା ତୁଷାର। ''କିଏ ସେମାନେ ମୁଁ ଜାଣିବାକୁ ଚାହୁଁଛି।'' ରୋଷେଇଘର ପର୍ଯ୍ୟନ୍ତ ଚାଲି ଯାଇଥିବା ଅଳକାନନ୍ଦାକୁ ଅନୁଧାବନ କରି ସେଇଭଳି ସ୍ୱରରେ ପଚାରିଲା ତୁଷାର।

''କ'ଣ ପଚାରୁଚି ଶୁଣି ପାରୁନ ?'' ଅଳକାନନ୍ଦାର ହାତରୁ ଗ୍ୟାସ୍ ଲାଇଟରଟା ଛଡେଇନେଲା ତୁଷାର।

''ମତେ ବି ଜାଳିଦବ ନା କ'ଣ ?''

''ତା' ତ କରିବାର କଥା। ଯାହା ଚାଲିଛି ଠିକ୍ ଅଛି। ତା' ହିଁ ଦରକାର। ଦୀର୍ଘଦିନ ଧରି କ୍ଲାନ୍ତ ହେଇ ଘରକୁ ଫେରିବାପରେ କ'ଣ ନା ମ୍ୟାଡ଼ମ୍ ଯାଇଛନ୍ତି

ବଧୂହତ୍ୟା ମାମଲା ଯାଞ୍ଚ କରିବାକୁ ।''

ତଥାପି ତୁଷାର ଶାନ୍ତ ଭାବରେ ଖାଇଲା ।

ଅଳକାନନ୍ଦାକୁ ପଚାରିଲା ନାହିଁ, ''ତୁମେ ଖାଇନ ଯେ ? ଅନେକ ଦୂର ଯାଇଥିଲ । ଆସ, ମୁଁ ଅପେକ୍ଷା କରୁଛି । ଏକାଠି ଖାଇବା ।''

ତୁଷାର ବିଛଣାକୁ ଯିବାପରେ ମଧ୍ୟ ଖାଇବାଟେବୁଲ ପାଖରେ ନୀରବରେ ବସିରହିଲା ଅଳକାନନ୍ଦା । ପାଣିଗ୍ଲାସଟିଏ ପିଇଦେଇ ନିଜ ଷ୍ଟଡିରୁମ୍‌ର କବାଟ ଭିତରୁ ବନ୍ଦକରି ଟେବୁଲ ଉପରେ ମୁଣ୍ଡଦେଇ ଶୋଇବାର ଉପକ୍ରମ କଲା ସେ । କିମ୍ବା ସନ୍ଧ୍ୟାରେ ଘରେ ପାଦଦେବା ପରେ ସେଦୁହିଁଙ୍କ ମଧ୍ୟରେ ଯେଉଁ ବାକ୍ୟ ବିନିମୟ ହେଲା ସେସବୁର ପ୍ରତିକ୍ରିୟା ସ୍ୱରୂପ ସେ ଖୁବ୍ ଦୁର୍ବଳ ହୋଇ ପଡିନି ତ ?

ହାତ ପାଖରେ ଫୋନ୍ ବାଜୁଛି । ଅଳକାନନ୍ଦା ଫୋନ୍ ଉଠାଇଲା । ଆଖିରୁ ଝରି ଯାଉଛି ଧାର ଧାର ଲୁହ ।

ମୁଁ ରୁଦ୍ର କହୁଛି, ସକାଳ ନଅଟାରେ ପ୍ରସ୍ତୁତ ଥିବ । ...ଲାବଣ୍ୟକୁ ଦେଖି ଆସିବା । ଜଣେ ସିନା ବଳି ପଡିଲା, ଯାକୁ କିନ୍ତୁ ଉଦ୍ଧାର କରିବାକୁ ହବ । ହ୍ୟାଲୋ... କିଛି କହୁନ ଯେ... ଡାକ୍ତର ରାୟ ଯିବ କହୁଚି । ଯାଉ- ଭଲ ହବ । ନୁହେଁ କି ?... ଅଳକା... ହ୍ୟାଲୋ ?

''ଶୁଣୁଛି, କୁହ ''

''ନା- ତୁମେ ବିଶ୍ରାମ ନିଅ, ସକାଳେ ଦେଖାହବ ।'' ରୁଦ୍ର ଫୋନ ରଖିଦେଲା ।

ସକାଳେ ? ସକାଳ ହବ ତ ତା' ଜୀବନରେ ? ଦୁଃଖ, କୋହ, ଲୁହରେ ଭିଜିଗଲା ଅଳକାନନ୍ଦା । ସେମାନେ ଜଳିଯାଇ ତରିଯାଉଛନ୍ତି, ତା'ର ମୁକ୍ତି କାହିଁ ? ସୀମା, ରୁମା ଭଲରେ ଅଛନ୍ତି । ନିଜକୁ ସଂଭାଳି ନେବାକୁ ପିଲାଦିନର ଟ୍ରେନିଂ । ସ୍ୱାଇଁ ଦୁହେଁ ମଧ୍ୟ ଖୁବ୍ ଭଲ । ରାହୁଳ ପିଲାଟାଏ, ସଂସାର ବିଷୟ ଜାଣିନାହିଁ । ତେବେ ତୁଷାର ପୁଅର ଭବିଷ୍ୟତ ପ୍ରତି ସଚେତନ ।

ଅଳକାନନ୍ଦାର ଏ ଘରପ୍ରତି କିଛି କରିବାର ନାହିଁ । ସଂସାର କାର୍ଯ୍ୟ ଶେଷ ହୋଇଛି । ଯିବାର ଅପେକ୍ଷାରେ କେତେଦିନ ଏ କଷ୍ଟ ?

ସ୍ଲିପିଂପିଲ୍‌ର ବୋତଲଟା ଖୋଲିଧରିଲା ଅଳକାନନ୍ଦା ? ହାତ ଥରି ଉଠୁଛି ।

''ନୋ ମ୍ୟାଡମ୍, ନିହାତି ଆବଶ୍ୟକ ସ୍ଥଳେ ଗୋଟାଏ ବା ଦୁଇଟି, ଆଦୌ ଅଧିକ ନୁହେଁ ।'' ବନ୍ଧୁ ଡାକ୍ତର ସୁଦୀପ ରାୟଙ୍କ ଚେତାବନୀ ।

ଏ କବାଟ କିଏ ଠେଲୁଛି ?

''ନନ୍ଦା.. କବାଟ ଖୋଲ, ଶୁଣିପାରୁନ ? ସୀମା ଫୋନ୍ କରିଛି । ମୋନା ତା' ଆଈକୁ ଖୋଜୁଛି ।''

ଅଳକାନନ୍ଦା ସେଇ ମୁହୂର୍ତ୍ତରେ ସବୁ ଭୁଲିଗଲା, ଖୋଲା ସ୍ଲିପିଂପିଲ୍‌ର ବୋତଲଟା ଟେବୁଲରେ ପଡ଼ିରହିଲା । କବାଟ ଖୋଲି ସେ ଧାଇଁଗଲା ତା' ଶୋଇବା ଘରକୁ ।

''ମୋନା...ମୋ ଧନ ।''

''ଆଈ, ତମେ ମୋ ଜନ୍ମଦିନରେ ଆସ, ଏତେ ବେଶୀ ଖେଳନା ରଖିଚି ତମ ପାଇଁ...''

ଅଳକାନନ୍ଦା କାନ୍ଦିଲା, ପୁଣି ହସିଲା । ସବୁ ଦୁଃଖ, ରାଗ, ଅଭିମାନ ଧୋଇଗଲା ତିନିବର୍ଷର ଶିଶୁ ମୋନାର ପଦଟିଏ କଥାରେ ।

ସ୍ୱପ୍ନରୁ ଉଠିଲା ଭଳି ହାତଘଡ଼ିକୁ ଚାହିଁଲା ଅଳକାନନ୍ଦା । ଶରତ ଗତୁର ଜହ୍ନ ଝରକା ପାଖରେ ମୁହଁ ଦେଖାଇଛି । କିଏ ଯେପରି ଭିତରୁ କହିଉଠୁଛି, ''ମୁଁ ବଞ୍ଚିବି, ସବୁ ସୁଖ ଶେଷ ହେଇଯାଇନାହିଁ, ଅନେକ କାମ କରିବା ପାଇଁ ଅଛି ।''

ଆହା, କିଏ ଗାଉଚି ଏମିତି ? ତା' ହୃଦୟର ଭାଷା ଫୁଟିଉଠିଛି ତା' କଣ୍ଠରେ ।

''ଏ ଜୀବନ, ତୁ ମୋତେ କ'ଣ ଦେଇଛୁ, ସେ ହିସାବ ମୁଁ ଚାହୁଁନାହିଁ । ଏବେ ବାକିଥିବା ମୁହୂର୍ତ୍ତ କେତୋଟି ମୋ ଇଚ୍ଛାରେ ମୋତେ ବଞ୍ଚିବାକୁ ଦେ... ।''

ଅଳକାନନ୍ଦା ତୁଷାରକୁ ଉଠାଇଲା ନାହିଁ, ବାହାର କବାଟ ଖୋଲି ରାସ୍ତାକୁ ଆସିଲା । ସଂଗୀତ ଆସର ପାଇଁ ଯିବା ଆସିବା କରୁଥିବା ସେହି ଜନସ୍ରୋତ ମଧ୍ୟରେ ଧୀରେ ଆଗେଇ ଚାଲିଲା ସେ । □□

ଆକାଶବାଣୀ ସୌଜନ୍ୟରୁ,
ଧରିତ୍ରୀ, ଜନ୍ମଦିନ ବିଶେଷାଂକ, ୧୯୯୪

# ଆଲ୍‌ବମର ଫଟୋ

ଜୀବନର ଆରମ୍ଭ ନା ଶେଷ? ଯଦିବା ଶେଷ, ଏ ମନରେ ଏତେ ଉତ୍ସାହ, ଏତେ ଶକ୍ତି କେଉଁଠୁ ଆସିଲା? ସେମାନେ ସେଇ ଗୋଟିଏ କଥାର ସ୍ମୃତିଚାରଣ ଭାଷଣ ପ୍ରସଙ୍ଗରେ ଦୋହରାଇଲେ। 'ଅପରାହ୍ନ', 'ଅବସନ୍ନ' ଭଳି ଶବ୍ଦ କେତୋଟି ତାଙ୍କ ମସ୍ତିଷ୍କର ସ୍ନାୟୁତନ୍ତ୍ରୀକୁ ଛୁଇଁଯାଇ ଚିନ୍ତାଧାରା ବିକ୍ଷିପ୍ତ କରିଦେଲା।

ତାଙ୍କର ସହକର୍ମୀ, ଛାତ୍ରଛାତ୍ରୀମାନଙ୍କୁ ସେହି ଗୋଟିଏ ପ୍ରଶ୍ନ ପଚାରିବାକୁ ଖୁବ୍ ଚାହୁଁଥିଲେ ଇନ୍ଦ୍ରନାଥ।

''କୁହ ତ? ଆରମ୍ଭ ନା ଶେଷ?''

ତା' ପଚାରିଥିଲେ ସେମାନେ ତାଙ୍କୁ କହିଥାଆନ୍ତେ ପାଗଳ ଅଥବା ବାର୍ଦ୍ଧକ୍ୟର ବାଚାଳତା!

ପଞ୍ଚାବନ ବର୍ଷ ବୟସରେ ସ୍ୱେଚ୍ଛାରେ ଅବସର ଗ୍ରହଣ କରୁଥିବା ଇନ୍ଦ୍ରନାଥ ମିଶ୍ରଙ୍କୁ ଏପରି ଯୁବସୁଲଭ ଚପଳତା ଶୋଭା ପାଏ ନାହିଁ। ଏ ବୟସରେ ଗାମ୍ଭୀର୍ଯ୍ୟ ହିଁ ବ୍ୟକ୍ତିର ସୌନ୍ଦର୍ଯ୍ୟ।

ତେବେ ତାଙ୍କ ବ୍ୟକ୍ତିତ୍ୱ ପ୍ରତି କେହି କେବେ ଆକ୍ଷେପ କରିନାହାନ୍ତି କିମ୍ବା ସେମାନଙ୍କୁ ଏଭଳି ଚିନ୍ତାର ପରିସର ମଧ୍ୟକୁ ନେଇ ଚାକିରୀର ଶେଷ ଦିନରେ ତାଙ୍କ ପ୍ରତି କୌଣସି ପ୍ରକାର ବିପରୀତ ଭାବନା ସୃଷ୍ଟି କରାଇବା ଇନ୍ଦ୍ରନାଥଙ୍କର ଉଦ୍ଦେଶ୍ୟ ନ ଥିଲା।

ଏ ପ୍ରଶ୍ନର ନିଜ ପାଇଁ କ'ଣ ଉତ୍ତର ହେବା ଉଚିତ ତା' ସେ ଠିକ୍ ଜାଣନ୍ତି। ଅଯଥାରେ ଅନ୍ୟକୁ ପଚାରି ହଇରାଣ କରିବେ କାହିଁକି ? କେହି ଜଣେ ହୁଏତ ଗ୍ରହଣ କରିପାରିବେ ନାହିଁ ତାଙ୍କର ବିଚାର !

ସୁରବାଳା ? ସକାଳେ ଉଠିବା ପରଠାରୁ ତାଙ୍କ ସହ ଦେଖା ହୋଇ ନାହିଁ।

ଟ୍ରେରେ ଚା' କପ୍, ଟି'ପଟ୍ ଇତ୍ୟାଦି, ବିସ୍କୁଟ କେତେ ଖଣ୍ଡି ପ୍ଲେଟରେ ରଖି ସୁରବାଳା ପାହାଚରେ ଓହ୍ଲାଇ ତାଙ୍କ ପାଖକୁ ଆସୁଛନ୍ତି। ପ୍ରାତଃଭ୍ରମଣ ପରେ ବଗିଚାର ଏହି ଶାନ୍ତ ପରିବେଶରେ ଚଉକି ଦୁଇଖଣ୍ଡ ପକାଇ ତାଙ୍କୁ ଅପେକ୍ଷା କରି ବସନ୍ତି ଇନ୍ଦ୍ରନାଥ। କେବେ ତା'ର ବ୍ୟତିକ୍ରମ ହୋଇନାହିଁ।

ଗତ ରାତିରେ ବିଳମ୍ବରେ ଫେରିଥିଲେ ଇନ୍ଦ୍ରନାଥ। ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ପକ୍ଷରୁ ବିଦାୟୀ ଚା' ଭୋଜି ପରେ ସହକର୍ମୀ, ବନ୍ଧୁ ପ୍ରଫେସରମାନଙ୍କ ସହ ଅନ୍ତରଙ୍ଗ ଆଳାପ, ପରେ ପରେ ରାତ୍ରିଭୋଜିରେ ଯୋଗଦେଇ ଆସି ଦେଖନ୍ତି ତ ତାଙ୍କୁ ଅପେକ୍ଷା କରି ସୁରବାଳା ଶୋଇଯାଇଛନ୍ତି।

ଇନ୍ଦ୍ରନାଥଙ୍କୁ ନିଦ ହେଲା ନାହିଁ। ଏ ଦିନଟି ଥିଲା ତାଙ୍କ ପାଇଁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ। ଆନନ୍ଦଉଲ୍ଲାସର ଦିନ। ଶୋଇବା ଘରେ ଆଲୁଅ ଜଳାଇ ଟେବୁଲ ପାଖରେ କିଛିକ୍ଷଣ ବସି ପୁରୁଣା ବହିପତ୍ର ଖେଳାଇଲେ ସେ। ତଥାପି ସୁରବାଳା କ୍ଳାନ୍ତ ଭାବରେ ଶୋଇ ରହିଥିଲେ।

ପ୍ରଭାତର ଏହି ସୁନ୍ଦର ସମୟଟି ସେ ଦୁହିଁଙ୍କ ପାଇଁ ଅପେକ୍ଷମାଣ।

ଇନ୍ଦ୍ରନାଥ ଚା' ପ୍ରସ୍ତୁତ କରି ସୁରବାଳାଙ୍କୁ ଧରାଇଲେ। ନିଜ କପ୍‌ଟି ଓଠରେ ଛୁଆଁଇ ପତ୍ନୀଙ୍କୁ ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଲେ କିଛିକ୍ଷଣ। କହିଲେ, ''ଜାଣିଚ ? କାଲି ରାତିରେ ପୁରୁଣା ଆଲ୍‌ବମ ଦେଖୁଥିଲି। ତୁମର ମନେଅଛି ? ପ୍ରଥମକରି ତୁମେ ଯେବେ ଆମ ଘରେ ପାଦ ଦେଲ। ସେଇ ଫଟୋଟି। ଗଣ୍ଠିଠାଳ ପକାଇ ଆମେ ଦୁହେଁ ଚାଲିଛନ୍ତି। ଓଢଣା ମଧ୍ୟରେ ତୁମ ମୁହଁର ଏହି ତୀକ୍ଷ୍ଣ ଗଢଣଟି ସ୍ପଷ୍ଟ ବାରି ହେଇ ଯାଉଛି ଫଟୋଟିରେ।''

''ହେ, ସେଦିନର କଥା ଏବେ କିଏ କହେ, ଏ ବୟସରେ ? ତୁମ ନାତିନାତୁଣୀଙ୍କ ବିଷୟ ଚିନ୍ତାକର।''

''ନା, କାହା କଥା ନୁହେଁ, ନିଜ କଥା ଭାବିବି।''

''ସ୍ୱାର୍ଥପର ! ନିଜ ପାଇଁ ଚିନ୍ତା କରିବାରେ କ'ଣ ଅଛି ?''

''ରୁହ ସୁରବାଳା, ଆଉ ଅଧିକ କୁହ ନାହିଁ। ମୁଁ ତୁମକୁ ପଚାରିବାକୁ

ଚାହୁଁଛି, ମୋ ସହ ହିଲ୍‌ଷ୍ଟେସନ ଯିବ? ଏ ସହରରେ ଗରମ ପଡିଲାଣି। ଅଳ୍ପଦିନ ମଧ୍ୟରେ ଅସହ୍ୟ ହେବ। ଚାଲ ମସୌରୀ ବା ନୈନିତାଲ୍‌ରେ କିଛିଦିନ କଟେଇ ଆସିବ।''

ସୁରବାଳା ସ୍ତବ୍ଧ ହୋଇଗଲେ। ଦିନଟିଏ ପୁରୀ ଯାଇ ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ସମୟ ମିଳେନାହିଁ ଇନ୍ଦ୍ରନାଥଙ୍କୁ। ତାଙ୍କର ଅଧ୍ୟାପନା, ଛାତ୍ରଛାତ୍ରୀଙ୍କୁ ନେଇ ସେ ବ୍ୟସ୍ତ ରହନ୍ତି। କେବେ କେବେ ବିଶ୍ୱବିଦ୍ୟାଳୟର କାର୍ଯ୍ୟ ନେଇ ସେ ଭାରତ ଭ୍ରମଣ କରି ଆସିଲେ ମଧ୍ୟ ସୁରବାଳାଙ୍କୁ ସାଙ୍ଗରେ ନେବାର ସୁଯୋଗ ନ ଥାଏ। ଏଣେ ପିଲାଙ୍କ ପାଠପଢା, ପରୀକ୍ଷା, ସେ ଯାଇ ପାରିବେ କିପରି ?

ପିଲାଏ ବଡ ହେବା ପରେ, ପୁଅ ଦୁହିଁଙ୍କ ଚାକିରୀ, ବିବାହ, ଝିଅଟିର ବିବାହ କାର୍ଯ୍ୟ ଶେଷ ହେବା ପରେ ପିଲାଙ୍କ ସଂସାର ଦେଖିଯିବାକୁ ସୁବିଧା ହୁଏ ନାହିଁ। ସେମାନେ ରହୁଥିବା ସହରର ଦୂରତ୍ୱକୁ ଅର୍ଥରେ ମାପି ନିରାଶ ହୁଅନ୍ତି ଇନ୍ଦ୍ରନାଥ, ସୁରବାଳା।

ପିଲାମାନେ କେବେ କିପରି ଆସନ୍ତି ଅଳ୍ପଦିନର ଅତିଥି ଭଳି। ବାପା, ମା'ଙ୍କୁ ଦେଖି ବୁଲାବୁଲି କରି ଫେରିଯାଆନ୍ତି।

ଅଧିକ ଇଚ୍ଛା ପାଇଁ ଖୁବ୍ ବେଶୀ ସମ୍ବଳର ଆବଶ୍ୟକତା। ତା' ସୁରବାଳା ବୁଝନ୍ତି, ନୀରବ ରହନ୍ତି। ଭବିଷ୍ୟତ ପାଇଁ ସାମାନ୍ୟ ସଂଚୟ, ଦୈନନ୍ଦିନର ଆଭିଜାତ୍ୟସଂପନ୍ନ ଅର୍ଥବ୍ୟୟ, ଅନ୍ୟାନ୍ୟ ବାହାରିଆ ଖର୍ଚ୍ଚ ମଧ୍ୟ ରହିଛି। ଭାଗ, ମାପ, ମିଶାଣ, ଫେଡାଣ କରି ପରିବାର ଚଳାଇବାକୁ ହୁଏ ଇନ୍ଦ୍ରନାଥଙ୍କୁ। ଏସବୁ ସତ୍ତ୍ୱେ ପିଲାମାନଙ୍କୁ ନ ଦେଖି ରହିବା ତାଙ୍କୁ ଅସହ୍ୟ ହେଉଛି ଏବେ।

''କିଛି କହିଲ ନାଇଁ ଯେ ? କ'ଣ ଏତେ ଭାବୁଚ ?''

ଇନ୍ଦ୍ରନାଥଙ୍କ କଥାରେ ସ୍ୱପ୍ନରୁ ଉଠିବା ଭଳି ଖବରକାଗଜ ତଳୁ କ'ଣ ଖୋଜି ହେଲେ ସୁରବାଳା।

''ଶୁଣୁଛ, ମୁଁ ଭୁଲିଯାଇଛି କହିବାକୁ, ନିଳୟ ଚିଠି ଦେଇଛି। ଲେଖିଛି... ନିଅ ପଢୁନ।''

''କ'ଣ ଲେଖିଛି କୁହ।'' ଗମ୍ଭୀର ସ୍ୱରରେ ପଚାରିଲେ ଇନ୍ଦ୍ରନାଥ।

''ତୁମକୁ ମୋତେ ଯିବା ପାଇଁ ଡ଼ାକିଛି। ଆମେ ଯାଉକୁ ତା' ପାଖରେ ରହିବା। ଏ ବୟସରେ ତାହା ହିଁ ହେବା ଉଚିତ ବୁଝାଇଛି। ପୁଣି ତୁମ ସହ

କିଛି ଜରୁରୀ କଥାବାର୍ତ୍ତା ଅଛି।'' ଚିଠି ଖଣ୍ଡକରୁ ଏତକ ଉଦ୍ଧାର କରି ଇନ୍ଦ୍ରନାଥଙ୍କୁ ବୁଝାଇଲେ ସୁରବାଳା।

''କେତେଦିନ ଆମେ ସୁସ୍ଥ ରହିବା? ଶେଷକୁ ସେଇ ପୁଅ, ବୋହୂଙ୍କ ଆଶ୍ରୟ ଖୋଜିବାକୁ ହିଁ ହେବ।''

ଇନ୍ଦ୍ରନାଥଙ୍କୁ ନୀରବରେ ବସିଥିବାର ଦେଖି ଏକ ତରଫା ଭାବରେ କହୁଥିଲେ ସୁରବାଳା।

ଇନ୍ଦ୍ରନାଥ ହସିଉଠିଲେ ବେପରୱା ଭାବରେ- ''ଅନ୍ତିମ ଯାତ୍ରାର ପ୍ରସ୍ତୁତି ପର୍ବ।'' ଆଉ ଥରେ ସେମିତି ହସ।

''ସବୁ ବାଜେକଥା ଏଇ ଚା' ଖାଇବା ବେଳେ ତୁମ ମୁଣ୍ଡରେ ପଶେ।''

ସୁରବାଳା ବିରକ୍ତି ପ୍ରକାଶ କରି ଉଠି ପଡିଲେ ନିଜ ଚଉକିରୁ।

ଇନ୍ଦ୍ରନାଥ କହିଲେ, ''କାହିଁକି ତରତର ହଉଛ? ମୁଁ ଆଜି ୟୁନିଭରସିଟି ଯିବି ନାହିଁ। ଶୁଣ, ଏବେ ଯୁଆଡେ କହିବ ନେଇଯିବି। ନିଳୟ ଚାହୁଁଛି ତ? ଚାଲ, କିଛିଦିନ ଯାଇ ବୁଲି ଆସିବା।''

ନିଳୟକାନ୍ତ, ସାଗରିକା ଷ୍ଟେସନରୁ ପାଛୋଟି ନେଲେ ଇନ୍ଦ୍ରନାଥ, ସୁରବାଳାଙ୍କୁ। ସେଦିନ ରବିବାର। ସୁଖରେ ବିତିଗଲା ଦିନଟି। ନାତି, ନାତୁଣୀଙ୍କର ଦରୋଟି କଥା ଶୁଣି ସୁରବାଳାଙ୍କ ମନ ପୂରିଗଲା। ନିଳୟର ଘରେ ରହୁଥିବା ପିଅନଟି ଖୁବ ଭଲ ଜଣାପଡୁଛି। ମନଦେଇ ରନ୍ଧାବଢା କରିଛି। ଆୟାଟି ପିଲାଦୁହିଁଙ୍କୁ ସମ୍ଭାଳୁଛି। ସାଗରିକା, ନିଳୟ ସେମାନଙ୍କ ପାଖ ଛାଡୁ ନାହାଁନ୍ତି। ଇନ୍ଦ୍ରନାଥ ତିନିବର୍ଷର ନାତୁଣୀକୁ ବିଲେଇ ଚିତ୍ର ଆଙ୍କି ଦେଖାଉଛନ୍ତି। ସୁରବାଳାଙ୍କ କୋଳରେ ଝୁଲୁଛି ବର୍ଷକର ଛୋଟ ନିଳୟ। ଅବିକଳ ବାପା ଭଳି ଗଢଣ, ତା' ମା'ର ରଙ୍ଗ ଆଣିଛି।

ସୋମବାର ସକାଳେ ଏ ସବୁର ପରିବର୍ତ୍ତନ ହେଲା। ନିଳୟକାନ୍ତ, ସାଗରିକା ଧାଇଁ ଧାଇଁ ଅଫିସ ବାହାରି ଗଲେ। କାହାରି ରୂପରେଖ ଦେଖିବା ସମ୍ଭବପର ହେଲାନାହିଁ। ପିଅନଟି ଚା' ଦେଲା। ଗାଧୋଇ ଆସି ବସିଛନ୍ତି ଇନ୍ଦ୍ରନାଥ, ସୁରବାଳା। ଜଳଖିଆ ଖାଇବାର ସମୟ ବିଳମ୍ବ ହେଲାଣି। ସୁରବାଳାଙ୍କ ମନ ସମ୍ଭାଳି ହେଲା ନାହିଁ। ରୋଷେଇ ଘରକୁ ଯାଇ ଇନ୍ଦ୍ରନାଥଙ୍କ ପାଇଁ ଟୋଷ୍ଟ, ଛେନା, ଫଳ ଆଉ ଥରେ ଚା' ପ୍ରସ୍ତୁତ କରି ଆଣିଲେ ସେ।

ତଥାପି ବାହାରେ ବସି ମାଳୀ ସହ ପିଅନର ଗପ ଶେଷ ହେଉ ନ ଥାଏ। ପିଲା ଦୁହେଁ ଶୋଇଛନ୍ତି। ମା'ବାପା ଯିବା ପରେ ସେମାନେ ବିଳମ୍ବରେ ଉଠନ୍ତୁ, ଏଇ ଚିନ୍ତାଧାରା ନେଇ ସାନ ପିଲାଦୁହିଁଙ୍କୁ ଆୟା ରାତି ଡେରିରେ ଶୁଆଇଥିଲା। ହେଇ ତ, ଉଠି ପଡିଲେଣି। କି କାନ୍ଦ ସେମାନଙ୍କର! ଏ ଲୋକ ଦୁଇଜଣ ସମ୍ଭାଳି ପାରୁନାହାନ୍ତି। ଆୟା ଏଲିଜା ଉପରେ ହାତ ଉଠାଉଛି। ପିଅନଟି ବଡ ପାଟିରେ ରଗାରଗି କରୁଛି। ଓହୋ, ଗାଧୋଇ ଦେବା, ଖୁଆଇବାରେ କି ଅପରିଷ୍କାର କାରବାର! ସୁରବାଳାଙ୍କ ଅସନ୍ତୋଷ ଦେଖି ଇନ୍ଦ୍ରନାଥ କହିଲେ, "ତୁମେ ଏଥିରେ ମୁଣ୍ଡ ପୂରାଅ ନାହିଁ। ଯାହାର ପିଲା ସେ ବୁଝନ୍ତୁ।"

"ଆମ ପିଲା ନୁହଁ?" ଏଲିଜାକୁ କୋଳେଇ ନେଇ ଉତ୍ତର ଦେଲେ ସୁରବାଳା।

ଇନ୍ଦ୍ରନାଥ ହସି ଦେଇ ନୀରବ ହେଲେ। ଦିନଯାକ ପୁଅବୋହୂଙ୍କର ଦେଖା ନାହିଁ। ଆୟା କହିଲା, "ଅଧେ ଦିନ ଏମିତି ରହିଯାଆନ୍ତି ମେମ୍ ସା'ବ୍, ବହୁତ ସାଙ୍ଗସୁଖ, ଭୋଜିଖାଇ ଯାଉଥିବେ। ସା'ବ୍‌ଙ୍କର ଟୁର୍ ନହଲେ ଅଫିସ କାମ।"

ରାତି ବାରଟାରେ ସେମାନଙ୍କ ସହ କି କଥାବାର୍ତ୍ତା? ଇନ୍ଦ୍ରନାଥଙ୍କୁ ଅସହ୍ୟ ହେଲାଣି। ତିନିଦିନ ରହିସାରିଲେଣି ସେମାନେ। ତିନିବର୍ଷ ପରି ମନେ ହେଉଛି। ସୁରବାଳାଙ୍କୁ ନିଦରୁ ଉଠାଇ ସେ ପଚାରିଲେ, "ନିଳୟର ଗାଡି ଯାଉଛି ସେୟାଡେ। ଆମକୁ ବିନୟ ଘରକୁ ଯାଇ ବୁଲି ଆସିବାକୁ କହୁଛି। ଭାବୁଛି ବିନୟ ଏବଂ ନୀଳିମା ଘରେ ଅଳ୍ପଦିନ ବୁଲାବୁଲି କରି ଚାଲିଯିବା। ଆଉ ଆସିବା କାହିଁକି?"

ଅଗତ୍ୟା ଦୀର୍ଘଶ୍ୱାସ ନେଇ ସୁରବାଳା କହିଲେ, "ହଁ, ସେଇୟା କରିବା।"

ସାଗରିକା କହିଲା, "ଏ କ'ଣ ବୋଉ? ଆପଣ ଅଛନ୍ତି ଭାବି ମୁଁ ନିଶ୍ଚିନ୍ତ ହୋଇଯାଇଛି। କେତଟା ଦିନ ଅବା ରହିଲେ!"

ସୁରବାଳାଙ୍କ ଆଖି ଓଦା ହୋଇ ସବୁ ଝାପ୍‌ସା ଦେଖାଗଲା। ତାଙ୍କର ପରିପୂର୍ଣ୍ଣ ସଂସାର ଅଥଚ ସବୁ ଥାଇ ସେ କିଛି ଛୁଇଁ ପାରୁ ନାହାନ୍ତି। କ'ଣ କୋଉଠି ଅସୁବିଧା ହୋଇଯାଉଛି ସେ ବୁଝିପାରୁ ନାହାଁନ୍ତି।

ରାତି ଖାଇବା ଶେଷହେବା ପରେ ନିଳୟ କହିଲା, "ବାପା, ଏଯାଏ ମୋର ପ୍ଲାନ ମୁଁ ଆପଣଙ୍କୁ କହିନାହିଁ। ଏବେ ଆପଣଙ୍କର ବସିବା ସମୟ

ଆସିଗଲା। ସେ ଯେଉଁ ଜମି କିଣିଥିଲେ ତହିଁରେ ମଲ୍‌ଟି ଷ୍ଟୋରେଡ୍ ବିଲ୍‌ଡ଼ିଂଟିଏ ତିଆରି କଲେ ଭବିଷ୍ୟତ ପାଇଁ ଖୁବ୍ ଭଲ ହେବ। ସବୁ ଫ୍ଲାଟ ଭଡାଦେଇ ଆପଣ ମୋ ପାଖରେ, ବିନୟ ପାଖରେ ରହିପାରନ୍ତି କିମ୍ବା ଇଚ୍ଛା କଲେ ଗୋଟିଏ ଫ୍ଲାଟରେ ଆପଣ, ବୋଉ ଆନନ୍ଦରେ ରହିପାରିବେ। ବର୍ତ୍ତମାନ ସେ ସହରରେ ଘରଭଡାର ଖୁବ୍ ଚାହିଦା ଅଛି ଏବଂ ଆପଣ ଜାଣନ୍ତି ମୁଁ ବା ବିନୟ ଚାକିରି ଛାଡି ଘର ତିଆରି ପାଇଁ ସମୟ ଦେଇପାରିବୁ ନାହିଁ।''

''ବାପା ରେ, ଏତେ ଟଙ୍କା କାହିଁ?'' ସୁରବାଳା କଥା ମଝିରେ ବାଧା ଦେଇ କହି ପକାଇଲେ।

''ଟଙ୍କା ଇନ୍‌ଭେଷ୍ଟ୍ କଲେ ଟଙ୍କା ମିଳେ ବୋଉ, ଖାଲି ସଂଚି ରଖିଲେ ନୁହଁ। ଏବେ ତ ବାପା ପେନସନ୍, ଗ୍ରାଚ୍ୟୁଇଟି, ଇନ୍‌ସୁରାନ୍‌ସ ଇତ୍ୟାଦିରୁ ସବୁ ଟଙ୍କା ପାଇଯିବେ।''

''ତା' ଠିକ୍। କିନ୍ତୁ ଏସବୁ ଝଞ୍ଜାଳ ମୁଁ ପାରିବିନି। ତୁମେ ସବୁ ତ ଜାଣ, ଆମର ସେଇ ଜମି, ସୁନ୍ଦର ଫୁଲ ଫଳର ବଗିଚାରେ ଦୁଇବଖରା ଘର ତିଆରି ସରିଛି। ମାତ୍ର ଦୁଇଟି ଲୋକ ଚଳିବା ପାଇଁ ତା' କ'ଣ ଯଥେଷ୍ଟ ନୁହଁ?''

ଏହାପରେ ଇନ୍ଦ୍ରନାଥ ନୀରବ ରହି ବୋଧହୁଏ ଅନେକ କଥା କହୁଥିଲେ। ''ଦେଖ, ଏ ମୋ ଜୀବନର ଆରମ୍ଭ ପର୍ଯ୍ୟାୟ। ମୁଁ ବନ୍ଧନ ଚାହେଁ ନାହିଁ। ମୋତେ ନିଜ ଇଚ୍ଛା ମୁତାବକ ବଞ୍ଚିବାକୁ ଦିଅ। ତୁମେ ସବୁ ମୋ ପିଲାମାନେ ସୁଖଶାନ୍ତିରେ ରୁହ, ଆନନ୍ଦରେ ରୁହ। ଆମେ ମା'ବାପା ସେଇୟା ଚାହୁଁ।''

ଇନ୍ଦ୍ରନାଥଙ୍କ ମନ ଭିତରର କଥା କେହି ଶୁଣିପାରୁ ନ ଥିଲେ। ନିଳୟ, ସାଗରିକା ଅନେକ ବେଳୁ ସେ ସ୍ଥାନରୁ ଉଠିଯାଇଥିଲେ। ଏକମାତ୍ର ସୁରବାଳା ମୂର୍ତ୍ତିଟିଏ ଭଳି ଖାଇବା ଟେବୁଲର ଗୋଟିଏ ପାଖରେ ବସି ରହିଥିଲେ ଅନେକ ସମୟ ପର୍ଯ୍ୟନ୍ତ। □□

ଆକାଶବାଣୀ, କଟକ ସୌଜନ୍ୟରୁ
ଧରିତ୍ରୀ, ଜନ୍ମଦିନ ବିଶେଷାଙ୍କ, ୧୯୯୨

# ଅନ୍ୟ ଏକ ସକାଳ

ଏ ଆତ୍ମାର ବନ୍ଧନ। ଜନ୍ମଜନ୍ମାନ୍ତରର ସାଥୀ ଆମେ। ତୁମକୁ ସୁଖୀ କରିବାକୁ ମୋର ଜନ୍ମ- ଏଭଳି କିଛି ଚିନ୍ତା ବୋଧହୁଏ ଚିରକାଳ ତୁମ ମନରେ ରହି ଆସିଛି। କିନ୍ତୁ ମୁଁ ଚାହୁଁଥିବା ବିଷୟ ପ୍ରତି ତୁମେ କେବେ ସଚେତନ ହୋଇଛ ?

ଅନେକ ଥର କହିଛି, ମୁଁ କ'ଣ ଚାହେଁ। ମୁଁ କିମିତି ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର ଜୀବନ ବଞ୍ଚିବାକୁ ଚାହେଁ। ପରସ୍ପରର ଇଚ୍ଛା ଅନିଚ୍ଛା ପ୍ରତି ସତର୍କ ଦୃଷ୍ଟି ରଖିବା ବୋଧହୁଏ ଦୁହିଁଙ୍କର କର୍ତ୍ତବ୍ୟ। ତା' କାହିଁକି ହୁଏ ନାହିଁ କୁହତ ?

''ସାଧନା, କ'ଣ ଏତେ ଭାବୁଛ ?''

''ନା, କିଛି ନୁହଁ।''

ସୁନ୍ଦର ମୁହୂର୍ତ୍ତମାନେ ମୋର ଖୁବ୍ ପ୍ରିୟ। ସେତେବେଳେ ବାଜେ ଚିନ୍ତା ମୋତେ ସ୍ପର୍ଶ କରେନାହିଁ।

''ଅଜସ୍ର କର୍ମର ତାଲିକା ମଧ୍ୟରେ ପେଶି ହେବାଠାରୁ ଦୂରେଇ ଆସି ଆମେ ଏଠି ପହଞ୍ଚିଛୁ। ମୁଁ ଯେପରି ତୁମକୁ ନୂଆ କରି ଦେଖୁଛି। ଆଇ ଆମ୍ ଥ୍ରୀଲ୍‌ଡ୍ ଟୁ, ସାଧନା !''

ଶୋଭନ କହେ, ''ଏ ସମସ୍ତ ପରିଶ୍ରମ ତୁମ ପାଇଁ, ମୋର ପିଲା

ଡିନୋଟିଙ୍କ ପାଇଁ। ଏ ମଧ୍ୟରେ ତୁମର କିଛି ସୌଖୀନ ଇଚ୍ଛା ନିମନ୍ତେ ମୁଁ ସମୟ ଦେଇ ନ ପାରି ଦୁଃଖିତ।''

ତେବେ ତୁମେ ଓ ଅନ୍ୟମାନଙ୍କ ମଧ୍ୟରେ ପାର୍ଥକ୍ୟ? ସାଧନା ଆକାଶକୁ ଚାହିଁଛି। କୋଟିନ୍ ଆକାଶରେ ନକ୍ଷତ୍ର ଖଞ୍ଜି ହୋଇଛନ୍ତି। ନିଷ୍ପ୍ରଭ ଦ୍ୱିତୀୟା ଜହ୍ନଟି।

'ସି-ଲର୍ଡ'ର 'ରୁଫ୍ ଗାର୍ଡନ୍'ରେ ଗୋଟିଏ ଆୟତାକାର ଟେବୁଲର ଦୁଇ ପାଖରେ ବସି ଥିଲେ ସାଧନା, ଶୋଭନ। ସ୍କଚ୍‌ର ନିଶା ଅପେକ୍ଷା ପରିବେଶ ସେମାନଙ୍କୁ ଅନ୍ୟଲୋକ କରିଥିଲା।

''ସାଧନା, ଖୁବ୍ ଭଲ ଲାଗୁଛି ଆଜି।''

''କେବଳ ଆଜି, ଆଉ କେବେ ନୁହଁ? ସବୁଦିନ କାହିଁକି ନୁହଁ?''

''ସବୁଦିନେ।''

''କେବେ କୁହନାହିଁ?''

''ସମୟ ପାଏନି।''

''ତା' ନୁହେଁ। ଜଣେ ପ୍ରଖ୍ୟାତ ଶିଳ୍ପପତିଙ୍କୁ ଏ ସମୟ ମିଳେ କେଉଁଠି? କିନ୍ତୁ ଶୋଭନ, ସମୟକୁ ଖୋଜିଯିବା ଆମର କାମ।''

''ତା' କରିବା କଥା।''

''ତୁମେ ଜୀବନକୁ ନୂଆ କରି ଚିହ୍ନୁଛ?''

''ତୁମେ ଚିହ୍ନେଇ ଦେଇଛ ବହୁ ପୂର୍ବରୁ।''

''କେତେ ସମୟ ଏଠି ବସି ପାରିବ?''

''ସେମାନଙ୍କ ନିର୍ଦ୍ଦିଷ୍ଟ ସମୟ ଅତିକ୍ରମ କରିଯିବା ଆମେ।''

''ତୁମର କନ୍‌ଫରେନ୍‌ସ୍ ଶେଷ ହେବା ପରେ ଅଧିକା ଦିନଟିଏ ଏଇ ସହରରେ ରହି ଯିବାକୁ ଇଚ୍ଛା କଲ କାହିଁକି?''

''ତୁମ ପାଇଁ। ଖୁସି ଅଛ ନା? ତୁମେ ସୁଖୀ ଭାବ ନିଜକୁ?''

''ସବୁଦିନେ, ସବୁବେଳେ। ଦୁଃଖିତ ହେବାର କାରଣମାନଙ୍କୁ ମୁଁ ଦୂରେଇ ଦିଏ ମନରୁ।''

''ସାଧନା, ଆଉ ଥରେ କୁହ।''

''ଏ କି ଆଗ୍ରହ? ମୋତେ ନୂଆ ଜାଣୁଛ?''

''ଏ ଶାଢୀଟା କୋଉଠୁ କିଣିଛ?''

''ଗତ ଅକ୍ଟୋବରରେ ଆମେ କାଠମାଣ୍ଡୁ ଯାଇଥିଲେ। ଭୁଲିଯାଇଛ ?''

''ସୁନ୍ଦର ମାନୁଛି ତୁମକୁ। ଏବେ ଟିକେ ଝଡି ଯାଇଛ। ଠିକ୍ ଅଛ। ଆଉ ପତଳା ହେଲେ ଭଲ ନୁହେଁ।''

''ହସୁଛ ? କ'ଣ ଏମିତି ଚାହିଁଛ ? ତୁମେ ଶୋଭନ ନୁହଁ, ସୁଶୋଭନ।'' ମୁଁ ଏମିତି ଭାବରେ ତୁମକୁ ଦେଖିବାକୁ ଚାହେଁ। ତୁମେ କିନ୍ତୁ କେବେ କେବେ ଅଲଗା ଲୋକ ହେଇଯାଅ।

''ତୁମକୁ ଦେଖି ସେମାନେ କେହି ମିଛ କହି ନାହାନ୍ତି।''

''ସେମାନେ ? ଓଃ।'' ଏ ବେଳରେ ସେମାନଙ୍କୁ କାହିଁକି ଆମ ଭିତରକୁ ଟାଣି ଆଣ ? କାହିଁକି ସୁଶାନ୍ତକୁ ମୋ ସହ ପରିଚୟ କରେଇଥିଲ ?

''ସାଧନା, ସେମାନେ ତୁମକୁ ଖୁବ୍ ପସନ୍ଦ କରନ୍ତି। ତୁମେ ମିଶି ପାର। ତୁମ ରୁଚି, ତୁମର ବ୍ୟବହାର ଅନେକଙ୍କ ଠାରୁ ସ୍ୱତନ୍ତ୍ର। ଆଇ ଆମ୍ ପ୍ରାଉଡ୍ ଅଫ୍ ଇଉ। ସେଦିନ ସୁଶାନ୍ତ କ'ଣ କହିଥିଲା ତୁମକୁ ?''

ଆଜି କାହିଁକି ପୁଣି ସେ କଥା ? ପ୍ରତିଦିନ ଏମିତି କିଛି କୁହ ତୁମେ, ଖୁବ୍ ଖୁସିରେ ପଚାରି କଥା ଆଦାୟ କରିନିଅ। ଏ ପଚାରିବାରେ ତୁମର କିଛି ମନ୍ଦ ଉଦ୍ଦେଶ୍ୟ ନ ଥାଇପାରେ, ମାତ୍ର ମୋ ଉତ୍ତର ପରେ ମୋତେ ବାରମ୍ବାର କହିବାର ସୁଯୋଗ ପାଇଯାଅ ତୁମେ। ସେ କଥା ବୁମେରାଂ ଭଳି କ୍ଷତ ବିକ୍ଷତ କରେ ମୋତେ।

ମୁଁ ତୁମକୁ ଅତ୍ୟନ୍ତ ଶ୍ରଦ୍ଧାରେ ପଦେ କିଛି କହିବାକୁ ଗଲେ ତୁମେ ସେମାନଙ୍କୁ ମନେ ପକାଇ ଦିଅ। ସବୁ କଥା ସେଇଠି ବନ୍ଦ ହୋଇଯାଏ। ଆମେ ଦୁହେଁ ଭିନ୍ନ ଲୋକ ଭଳି ଚଳପ୍ରଚଳ ହୁଅନ୍ତି ନିଜ ପାଖରେ।

ଶୋଭନ, କିଛି ନ ଜାଣି ପଦେ ପଦେ କଥାକୁ ବାରମ୍ବାର କହିଛ। କିନ୍ତୁ ସୁଶାନ୍ତ। ଡିପାର୍ଟମେଣ୍ଟରେ ସବୁବେଳେ ତା' ସହ ଦେଖା। ସବୁ କାମ ମୋର ସୁଶାନ୍ତ ସଙ୍ଗେ କିପରି ଖଞ୍ଜି ହୋଇଯାଏ- ଆଲୋଚନା, ସମ୍ମିଳନୀ, ରେଡିଓ, ଟେଲିଭିଜନ କାର୍ଯ୍ୟକ୍ରମ ଇତ୍ୟାଦି ଇତ୍ୟାଦି।

ସୁଶାନ୍ତ ବାରମ୍ବାର ମୋତେ ଟେଲିଫୋନ୍ କରେ। ବନ୍ଧୁତ୍ୱ ଗଢି ଉଠେ ଏ ସହରକୁ ଆସିବା ପରେ। କେଜାଣି କିଭଳି ଯେ ବହୁବାର ଆମର ଦେଖାହୁଏ, କିପରି ସବୁର ଯୋଗାଯୋଗ ହୋଇଯାଏ, ଏବେ ଏ ସବୁ ଭାବି ପାରେନାହିଁ

ମୁଁ। ତୁମକୁ ଏତେ କଥା ମୋର କହିବାର ନ ଥିଲା। ଏ କି ସମ୍ପର୍କର କଥା କହିଲି ତୁମକୁ ? ସବୁ ତ ଠିକ୍ ଥିଲା, ବାକିଟା ନ କହିଥିଲେ ଚଳି ଥାଆନ୍ତା।

ସୁଶାନ୍ତ ପାଗଳ ପରି ଯିଦ୍ କରି ବସେ। ମୋତେ ଫୋନ୍ କରେ, ଯିବାକୁ ହେବ। କିଛିଟା ଆଭାସ ଅନୁମାନ କରିଥିଲେ ବି କିପରି କ'ଣ କହିବି, କରିବି ଭାବି ନ ପାରି ନୀରବ ହୋଇଯାଏ ମୁଁ।

ମାତ୍ର ସେଦିନ କେଉଁ ବୌଦ୍ଧିକ ଆଲୋଚନାରେ ମଜ୍ଜିଥିବା ବେଳେ ଅକସ୍ମାତ୍ ସେ ଆଲୋଚନାର ଅନ୍ତରାଳରେ ଥିବା ସୁପ୍ତ ଇଚ୍ଛାଟି ନିର୍ଦ୍ୱନ୍ଦରେ ପ୍ରକାଶ କଲା ସୁଶାନ୍ତ, ''ମୁଁ ତୁମକୁ ଭଲପାଏ, ସାଧନା। ସମ୍ପୂର୍ଣ୍ଣ ଭାବେ ତୁମକୁ ପାଖରେ ପାଇବାକୁ ଚାହେଁ।''

ମୁଁ ବିସ୍ମିତ ହେଇନାହିଁ। ଜାଣି ପାରୁଥିଲି ଦିନେ ହୁଏତ ଏମିତି କିଛି କହିବ ସେ। ହୁଏତ ନ କହିପାରେ। ଏତେ ସହଜରେ ସୁଶାନ୍ତକୁ ପ୍ରତ୍ୟାଖାନ କରି ଚାଲି ଆସିଥିଲି ମୁଁ, ଅଥଚ ସେଇ ଶେଷ କଥାଟି ତୁମକୁ କହିଦେଲି !

ବହୁବର୍ଷ ପରେ ଟ୍ରେନ୍‌ରେ ଦେଖା ଉମାନାଥ ସହ, ବୟସରେ ମୋଠୁଁ ସାତ ସାନରେ ସାନ। ମୁଁ ଯାଉଥାଏ ହାଇଦ୍ରାବାଦ୍ ଏକାକୀ। ତୁମେ ବୋଧହୁଏ ସେଇଦିନ ବମ୍ବେରୁ କାର୍ଯ୍ୟ ସାରି ଫେରୁଥିଲ ହାଇଦ୍ରାବାଦ୍।

ଏବେ ତୁମେ ପଚାରୁଛ- ''ମନେ ଅଛି, ଟ୍ରେନ୍‌ରେ ଏକା ଯାଉଥିଲ ସେଦିନ, ସେଇ ପିଲାଟି କ'ଣ ତା'ର ନାଁ, ଉମାନାଥ ? ତୁମ କବିତା ସବୁ ଇଂଲିଶ୍ କରି ଛାପୁଥିଲା ବାହାରର ପତ୍ରପତ୍ରିକାରେ, ତୁମକୁ ସେ ଖୁବ୍ ଲାଇକ୍ କରେ। ଅଜସ୍ର ପ୍ରଶଂସା କରେ ତୁମ ଲେଖାର। କିଛି କହୁନ ଯେ, ସାଧନା।''

''ହଁ, ଉମାନାଥ।'' ସାଧନା ନୀରବ।

ଗ୍ଲାସ୍ ଦୁଇଟି ଭର୍ତ୍ତି କରି ପୁଣି ରଖି ଦେଇଛି ୱେଟର୍। ରାତ୍ରୀ ଖାଦ୍ୟର ଫରାଦ ଲେଖି ନେଉଛି ସେ। ଶୋଭନ ତାକୁ ବୁଝେଇବାରେ ବ୍ୟସ୍ତ।

ନୀରବରେ ବସିଛି ସାଧନା।

ସନ୍ଧ୍ୟା ଛଅରୁ ପରଦିନ ଦିନ ସାଢେ ବାରଟା। ମୋ ସହ ଏକମାତ୍ର ଓଡିଆ ସହଯାତ୍ରୀ ସେ, ଅନ୍ୟ ଦୁଇଜଣ ବମ୍ବେ ବାସିନ୍ଦା ଭଦ୍ରଲୋକ। ମୋର ଖବର ବୁଝିବାରେ ତତ୍ପର ହେଲା ଉମାନାଥ। ମୋତେ ରାତିରେ ଭଲରେ ବିଶ୍ରାମ

ବି ଦେଲାନାହିଁ।

"ନା ମ୍ୟାଡ୍‌ମ, ଶୋଇବାକୁ ହେବନାହିଁ। ଆପଣଙ୍କ ସହ କଥା କହିବାକୁ ଖୁବ୍ ଭଲ ଲାଗୁଛି। ଏ ରାସ୍ତା ସୁଦୀର୍ଘ ହେଲେ ମଧ୍ୟ ଜାଣି ହେଉନାହିଁ। କେତେଦିନ ରହିବେ ? ମୋ ସାଙ୍ଗରେ ଚାଇନ୍ତୁ ବୁଲିବେ। ହୋଟେଲ୍ 'ବନ୍‌ଜାରା'ରେ ଆପଣଙ୍କ ବୁକିଂ ହୋଇଛି। ମୋର ବି ସେଇଠି କରିଛି।"

ପୁଣି ସେଇ ଭୁଲ୍ କଲି ମୁଁ। ଖୁସିରେ ଖୁସିରେ ସେଇ ଶେଷ କଥାଟି ତୁମକୁ କହିଦେଲି, ଶୋଭନ !

"ମ୍ୟାଡ୍‌ମ, ଏଠି ଆପଣ ନ ବସି, ଯଦି ଜଣେ ଅନିନ୍ଦ୍ୟା ରୂପସୀ ତରୁଣୀ ମୋର ସହଯାତ୍ରିଣୀ ହୋଇଥାଆନ୍ତା ସତେ କ'ଣ ମୁଁ ଏତେ ବେଶୀ ଖୁସି ହୋଇ ପାରିଥାଆନ୍ତି ?"

ମୁଁ ଜାଣେନି, ଶୋଭନ୍, ସେମାନେ ସବୁ ଏମିତି କାହିଁକି କହନ୍ତି ? ସବୁ ଶୁଣି, ତୁମକୁ ଭଲ ଭାବେ ଜାଣିବା ପରେ ବି ମୁଁ ସେଇ ଭୁଲ୍‌ଟି କରିବସେ ଆଉ ଥରେ।

ନା, ଏବେ ଆଉ ନୁହେଁ। ସାନ ପିଲା ଭଳି ପ୍ରଗଲ୍‌ଭ ଭାବେ କଥା ଗପି ଏ ସବୁର ଆଲୋଚନାରେ ମୁଁ ଭାଗ ନେବାକୁ ଚାହେଁନା। ମୁଁ ସେ ବୋକାମୀ କରିବି କାହିଁକି ?

ସୁଶାନ୍ତ, ଉମାନାଥ, ଆଉ କିଏ କିଏ ? ମୋ ସହ ଟିକିଏ ମିଶିବାରେ ସେମାନେ ଯଦି ନିଜ ନିଜ ମନରେ ରଖିଥିବା କଥାମାନ କହି ଦେଇଛନ୍ତି, ଭୁଲ୍ କୋଉଠି ଆଉ ରହିଲା ? କ'ଣ ବା କଳୁଷିତ ହୋଇଗଲା ଆମର ଏ ସମ୍ପର୍କ ?

ଉମାନାଥ କଥା ଛାଡ।

ସୁଶାନ୍ତ ଚାହୁଁଥିବା କଥାଟି କହି ଦେଇଛି। ଅନ୍ୟ କେହି ହୁଏତ ମିଥ୍ୟା ଭଦ୍ରାମୀର ଆବରଣ ତଳେ ଏହାଠାରୁ ବହୁ କୁତ୍ସିତ ଉଦ୍ଦେଶ୍ୟ ନେଇ ଏ ସମାଜରେ ବିଚରଣ କରୁଛନ୍ତି। ଏସବୁ ଆଲୋଚନା କେବେ ବି ଆମ ଭିତରେ ଅନ୍ତତଃ ନ ହେଉ, ଶୋଭନ।

"ସାଧନା, ୱେଟର୍ ବେଶ୍ ଡେରି କରିବ ଡିନର୍ ଆଣିବାରେ।"

"ତୁମେ ଯିବା ପାଇଁ ବ୍ୟସ୍ତ ?"

"ଆଦୌ ନୁହେଁ। ମୁଁ ତୁମ କଥା ଭାବୁଛି।"

"ମୁଁ ତ ଏମିତି ବସି ବସି ରାତି କଟେଇ ଦେବାକୁ ଚାହେଁ।"

"ସତେ?" ଶୋଭନ ହସୁଛି, ସାଧନା ବି।

"ଶୋଭନ, ତୁମ ମୋର ସମ୍ପର୍କ କ'ଣ?"

"ତା' କ'ଣ ବୁଝେଇବା ଦରକାର?"

"ତା' ହେଉଛି ସବୁଠୁଁ ନିବିଡ଼ ସମ୍ପର୍କ, ଏମିତି ପଦେ କଥାରେ ବୁଝାଇବା ଦରକାର ହୁଏନି। ପରସ୍ପରକୁ ନ ଦେଖି ବି ଆମେ ତା' ଅନୁଭବ କରିପାରୁ। ତୁମ ପ୍ରତି ମୋର କେତେ ଦୂର ଶ୍ରଦ୍ଧା, ତା' କଥାରେ କଥାରେ କ'ଣ କହି ବୁଝେଇବି, ସାଧନା?"

ଏ ବିଷୟରେ କୌଣସି ବୁଝାମଣା ଆବଶ୍ୟକ ହୁଏ ନାହିଁ। ବିବାହ ପରେ ଯେଉଁ ସମ୍ପର୍କର ସୁଦୃଢ ସେତୁ ନିର୍ମିତ ହୋଇଥାଏ, ଅତି ଭୟଙ୍କର ଝଡଟିଏ ହେଲେ ବି ତା' ହଲିଯାଇ ପାରେନା। ତୁମେ ହିପୋକ୍ରାଟ୍, ଶୋଭନ।

ସ୍ୱାମୀ, ସ୍ତ୍ରୀଙ୍କ ପ୍ରେମ ସ୍ୱର୍ଗୀୟ। ଆତ୍ମାର ବନ୍ଧନ। ଏସବୁ ମିଛ, ବାଜେକଥା। କାହିଁକି ଆମେ ପରସ୍ପରକୁ ଜଗି ଛକାପଞ୍ଝାରେ ଚଳିବାକୁ ଚାହୁଁ? ପ୍ରତି ମୁହୂର୍ତ୍ତରେ ପ୍ରତିଟି କଥାରେ କାହିଁକି ତୁମେ ଆଘାତ ଦେଲାଭଳି କଥାମାନ କହ, ନିଜର ଭୁଲଟିଏ ବୁଝିବାରେ ଅକ୍ଷମ ହୋଇଉଠ? ଅଥଚ ସାମାନ୍ୟତମ ଚେଷ୍ଟାଟିଏ ବି କରନା ଆମର ଏଇ ସମ୍ପର୍କରେ ଶାଶ୍ୱତ ଆନନ୍ଦ ଭରି ଦେବାକୁ?

ମୋ ମନକୁ ଆଘାତ ଲାଗିଥିବା କଥାଟିଏ ମୁଁ ଯଦି ତୁମକୁ ନିର୍ଭୟରେ, ନିଃସଂକୋଚରେ ନ କହି ପାରିବି ତେବେ କି ମୂଲ୍ୟ ସେ ସମ୍ପର୍କର? ସେଭଳି ସମ୍ପର୍କର ରଜ୍ଜୁ ଏବେ ଏଇ ମୁହୂର୍ତ୍ତରେ ମୁଁ ଛିନ୍ନ କରୁଛି, ଶୋଭନ। ଆଉ ହେବନାହିଁ ତୁମ ସଙ୍ଗେ। ଏଭଳି ସଂକୀର୍ଣ୍ଣ ଜୀବନଯାତ୍ରା ମୁଁ ଚାହେଁନା, ଶୋଭନ।

ସାଧନା, ଶୋଭନଙ୍କର ଖାଇବା ପ୍ରାୟ ଶେଷ ହୋଇ ଆସିଥିଲା। ହଠାତ୍ ସାଧନା ନ୍ୟାପ୍‌କିନ୍‌ରେ ହାତ ମୁହଁ ପୋଛି ନେଇ ଯିବାକୁ ପ୍ରସ୍ତୁତ ହୋଇଗଲା। ଚେୟାର ଘୁଞ୍ଚାଇ ଶୋଭନକୁ ଆଦୌ ନ ଚାହିଁ ଦୃଢ ପଦକ୍ଷେପରେ ସେ ଆଗେଇ ଯାଉଛି। ଶୋଭନ ତାକୁ କିଛିକ୍ଷଣ ବିସ୍ମୟରେ ଚାହିଁରହି ଅନୁଚ୍ଚ ସ୍ୱରରେ ଡାକିଛି।

"ସାଧନା, ଏପର୍ଯ୍ୟନ୍ତ ମୁଁ ବିଲ୍ ପେମେଣ୍ଟ କରିନି। ଅପେକ୍ଷା କର।"

"ଅପେକ୍ଷା !" ସାଧନାର ଦମ୍ଭ ଭାଙ୍ଗି ଯାଉଛି ।

ହଁ, ଅନେକ କାର୍ଯ୍ୟ ବାକି ଅଛି । ତିନୋଟି ପିଲାଙ୍କର ଶିକ୍ଷା ଶେଷ ହୋଇନାହିଁ । ପୁଅ ଦୁହିଁଙ୍କ ଚାକିରି, ଝିଅଟିର ସତ୍‌ପାତ୍ରରେ ବିବାହ ।

ପିଲାଦିନେ ଛାଇକୁ ଦେଖି ଡରିବା ଭଳି ସାଧନା ନିଜ ଦୀର୍ଘଶ୍ୱାସର ସ୍ୱର ଶୁଣି ଚମକି ଉଠିଲା ।

ଶୋଭନକୁ ବାଦ୍ ଦେଇ ଏକା ଏକା ବଞ୍ଚିବାର ଯନ୍ତ୍ରଣା ସେ ସହି ପାରିବ କିପରି ? ତାକୁ ସାଲିସ୍ କରିବାକୁ ପଡିବ ।

ସାମୟିକ, ସାମାନ୍ୟ ମାନସିକ ଅଶ୍ୱସ୍ତି ସହିବା ବରଂ ଶ୍ରେୟସ୍କର । ବାକି ଜୀବନକୁ ଶେଷ ପର୍ଯ୍ୟନ୍ତ ଅଶାନ୍ତି, ଅସନ୍ତୋଷ, ଅସମ୍ମାନ ମଧ୍ୟରେ କିପରି ସେ ଆଗେଇ ନେଇ ପାରିବ ? ଶୋଭନକୁ ବାଦ୍ ଦେଇ ସେ ସୁଖୀ ହେବ ?

ଆଃ ପୁଣି ଥରେ ସେ କେଡେବଡ ଭୁଲ୍ କରିବାକୁ ଯାଉଥିଲା !

ସାଧନା ଯେପରି ଅନ୍ୟ ଲୋକ ହୋଇ ଯାଇଛି । ତା'ର ମନେ ହେଉଛି ସି-ଲର୍ଡର ରୁଫ୍ ଗାର୍ଡନ ରେଷ୍ଟୁରାଣ୍ଟ୍‌ରେ ଆଉ କେହି ନାହିଁ । କେବଳ ସେ ଓ ଶୋଭନ । ଉପରେ ଆକାଶ, ତଳେ ଟଟାଣରେ ରଖା ଯାଇଥିବା ଅସଂଖ୍ୟ ଗଛ ଲତାର ଗହଳରେ ସେମାନେ ଦୁଇଜଣ - ଶୋଭନ, ସାଧନା । ସେମାନେ ନୂଆ କରି ପରସ୍ପରକୁ ଭେଟୁଛନ୍ତି । ଏହା ନୂଆ ଜୀବନର ଆରମ୍ଭ ମାତ୍ର ।

ସାଧନା ସେ ଦାୟିତ୍ୱ ନେବ । ସେ ଶୋଭନକୁ ସୁନ୍ଦର ମଣିଷଟିଏ କରି ଗଢି ନେବ । ସ୍ନେହ ପ୍ରେମର ନିର୍ଝରିଣୀଟିଏ ହୋଇ ଝରିଯିବ ସେ ତା' ସଂସାରରେ ।

ସାଧନା କ'ଣ କାନ୍ଦି ପକାଇବ ? ନା ଅଜସ୍ର ଚୁମ୍ବନରେ ଶୋଭନ ମନର ସମସ୍ତ ନ୍ୟୂନତାକୁ ପୋଛିଦେବ ସେ ସେଇ ମୁହୂର୍ତ୍ତରେ ?

ଲିଫ୍‌ଟରେ ଓହ୍ଲାଇ ରାସ୍ତା ଅତିକ୍ରମ କରି ଯଥାଶୀଘ୍ର ଚାଲି ଯାଇଥିଲେ ସେମାନେ । ଘାଟର ଶେଷ ଫେରୀଟି ବୋଲ୍‌ଗାଟି ପ୍ୟାଲେସ୍ ପାଖକୁ ଯିବାକୁ ପ୍ରସ୍ତୁତ ହୋଇ ରହିଥିଲା । ଫେରୀଟି ଭାସି ଚାଲିଲା । ସାଧନା ନିର୍ଭୟରେ, ସ୍ୱଚ୍ଛନ୍ଦରେ ଶୋଭନର ଛାତିକୁ ଆଉଜି ବସି ରହିଥିଲା । □□

ସୁଚରିତା, ଶାରଦୀୟ ବିଶେଷାଂକ, ୧୯୮୯

''ଆଦୌ ନୁହେଁ। ମୁଁ ତୁମ କଥା ଭାବୁଛି।''

''ମୁଁ ତ ଏମିତି ବସି ବସି ରାତି କଟେଇ ଦେବାକୁ ଚାହେଁ।''

''ସତେ ?'' ଶୋଭନ ହସୁଛି, ସାଧନା ବି।

''ଶୋଭନ, ତୁମ ମୋର ସମ୍ପର୍କ କ'ଣ ?''

''ତା' କ'ଣ ବୁଝେଇବା ଦରକାର ?''

''ତା' ହେଉଛି ସବୁଠୁଁ ନିବିଡ଼ ସମ୍ପର୍କ, ଏମିତି ପଦେ କଥାରେ ବୁଝାଇବା ଦରକାର ହୁଏନି। ପରସ୍ପରକୁ ନ ଦେଖି ବି ଆମେ ତା' ଅନୁଭବ କରିପାରୁ। ତୁମ ପ୍ରତି ମୋର କେତେ ଦୂର ଶ୍ରଦ୍ଧା, ତା' କଥାରେ କଥାରେ କ'ଣ କହି ବୁଝେଇବି, ସାଧନା ?''

ଏ ବିଷୟରେ କୌଣସି ବୁଝାମଣା ଆବଶ୍ୟକ ହୁଏ ନାହିଁ। ବିବାହ ପରେ ଯେଉଁ ସମ୍ପର୍କର ସୁଦୃଢ଼ ସେତୁ ନିର୍ମିତ ହୋଇଥାଏ, ଅତି ଭୟଙ୍କର ଝଡଟିଏ ହେଲେ ବି ତା' ହଲିଯାଇ ପାରେନା। ତୁମେ ହିପୋକ୍ରାଟ୍, ଶୋଭନ।

ସ୍ୱାମୀ, ସ୍ତ୍ରୀଙ୍କ ପ୍ରେମ ସ୍ୱର୍ଗୀୟ। ଆତ୍ମାର ବନ୍ଧନ। ଏସବୁ ମିଛ, ବାଜେକଥା। କାହିଁକି ଆମେ ପରସ୍ପରକୁ ଢଗି ଛକାପଞ୍ଝାରେ ଚଳିବାକୁ ଚାହୁଁ? ପ୍ରତି ମୁହୂର୍ତ୍ତରେ ପ୍ରତିଟି କଥାରେ କାହିଁକି ତୁମେ ଆଘାତ ଦେଲାଭଳି କଥାମାନ କହ, ନିଜର ଭୁଲଟିଏ ବୁଝିବାରେ ଅକ୍ଷମ ହୋଇଉଠ? ଅଥଚ ସାମାନ୍ୟତମ ଚେଷ୍ଟାଟିଏ ବି କରନା ଆମର ଏଇ ସମ୍ପର୍କରେ ଶାଶ୍ୱତ ଆନନ୍ଦ ଭରି ଦେବାକୁ?

ମୋ ମନକୁ ଆଘାତ ଲାଗିଥିବା କଥାଟିଏ ମୁଁ ଯଦି ତୁମକୁ ନିର୍ଭୟରେ, ନିଃସଂକୋଚରେ ନ କହି ପାରିବି ତେବେ କି ମୂଲ୍ୟ ସେ ସମ୍ପର୍କର ? ସେଭଳି ସମ୍ପର୍କର ରଜ୍ଜୁ ଏବେ ଏଇ ମୁହୂର୍ତ୍ତରେ ମୁଁ ଛିନ୍ନ କରୁଛି, ଶୋଭନ। ଆଉ ହେବନାହିଁ ତୁମ ସଙ୍ଗେ। ଏଭଳି ସଂକୀର୍ଣ୍ଣ ଜୀବନଯାତ୍ରା ମୁଁ ଚାହେଁନା, ଶୋଭନ।

ସାଧନା, ଶୋଭନଙ୍କର ଖାଇବା ପ୍ରାୟ ଶେଷ ହୋଇ ଆସିଥିଲା। ହଠାତ୍ ସାଧନା ନ୍ୟାପ୍‌କିନ୍‌ରେ ହାତ ମୁହଁ ପୋଛି ନେଇ ଯିବାକୁ ପ୍ରସ୍ତୁତ ହୋଇଗଲା। ଚେୟାର ଘୁଞ୍ଚାଇ ଶୋଭନକୁ ଆଦୌ ନ ଚାହିଁ ଦୃଢ଼ ପଦକ୍ଷେପରେ ସେ ଆଗେଇ ଯାଉଛି। ଶୋଭନ ତାକୁ କିଛିକ୍ଷଣ ବିସ୍ମୟରେ ଚାହିଁରହି ଅନୁଚ୍ଚ ସ୍ୱରରେ ଡାକିଛି।

''ସାଧନା, ଏପର୍ଯ୍ୟନ୍ତ ମୁଁ ବିଲ୍ ପେମେଣ୍ଟ କରିନି। ଅପେକ୍ଷା କର।''

"ଅପେକ୍ଷା !" ସାଧନାର ଦମ୍ଭ ଭାଙ୍ଗି ଯାଉଛି ।

ହଁ, ଅନେକ କାର୍ଯ୍ୟ ବାକି ଅଛି । ତିନୋଟି ପିଲାଙ୍କର ଶିକ୍ଷା ଶେଷ ହୋଇନାହିଁ । ପୁଅ ଦୁହିଁଙ୍କ ଚାକିରି, ଝିଅଟିର ସତ୍‌ପାତ୍ରରେ ବିବାହ ।

ପିଲାଦିନେ ଛାଇକୁ ଦେଖି ଡରିବା ଭଳି ସାଧନା ନିଜ ଦୀର୍ଘଶ୍ୱାସର ସ୍ୱର ଶୁଣି ଚମକି ଉଠିଲା ।

ଶୋଭନକୁ ବାଦ୍ ଦେଇ ଏକା ଏକା ବଞ୍ଚିବାର ଯନ୍ତ୍ରଣା ସେ ସହି ପାରିବ କିପରି ? ତାକୁ ସାଲିସ୍ କରିବାକୁ ପଡ଼ିବ ।

ସାମୟିକ, ସାମାନ୍ୟ ମାନସିକ ଅଶ୍ୱସ୍ତି ସହିବା ବରଂ ଶ୍ରେୟସ୍କର । ବାକି ଜୀବନକୁ ଶେଷ ପର୍ଯ୍ୟନ୍ତ ଅଶାନ୍ତି, ଅସନ୍ତୋଷ, ଅସମ୍ମାନ ମଧ୍ୟରେ କିପରି ସେ ଆଗେଇ ନେଇ ପାରିବ ? ଶୋଭନକୁ ବାଦ୍ ଦେଇ ସେ ସୁଖୀ ହେବ ?

ଆଃ ପୁଣି ଥରେ ସେ କେଡେବଡ ଭୁଲ୍ କରିବାକୁ ଯାଉଥିଲା !

ସାଧନା ଯେପରି ଅନ୍ୟ ଲୋକ ହୋଇ ଯାଇଛି । ତା'ର ମନେ ହେଉଛି ସି-ଲର୍ଡର ରୁଫ୍ ଗାର୍ଡେନ ରେଷ୍ଟୁରାଣ୍ଟ୍‌ରେ ଆଉ କେହି ନାହିଁ । କେବଳ ସେ ଓ ଶୋଭନ । ଉପରେ ଆକାଶ, ତଳେ ଟଟାଣରେ ରଖା ଯାଇଥିବା ଅସଂଖ୍ୟ ଗଛ ଲତାର ଗହଳରେ ସେମାନେ ଦୁଇଜଣ - ଶୋଭନ, ସାଧନା । ସେମାନେ ନୂଆ କରି ପରସ୍ପରକୁ ଭେଟୁଛନ୍ତି । ଏହା ନୂଆ ଜୀବନର ଆରମ୍ଭ ମାତ୍ର ।

ସାଧନା ସେ ଦାୟିତ୍ୱ ନେବ । ସେ ଶୋଭନକୁ ସୁନ୍ଦର ମଣିଷଟିଏ କରି ଗଢ଼ି ନେବ । ସ୍ନେହ ପ୍ରେମର ନିର୍ଝରିଣୀଟିଏ ହୋଇ ଝରିଯିବ ସେ ତା' ସଂସାରରେ ।

ସାଧନା କ'ଣ କାନ୍ଦି ପକାଇବ ? ନା ଅଜସ୍ର ଚୁମ୍ବନରେ ଶୋଭନ ମନର ସମସ୍ତ ନ୍ୟୂନତାକୁ ପୋଛିଦେବ ସେ ସେଇ ମୁହୂର୍ତ୍ତରେ ?

ଲିଫ୍‌ଟରେ ଓହ୍ଲାଇ ରାସ୍ତା ଅତିକ୍ରମ କରି ଯଥାଶୀଘ୍ର ଚାଲି ଯାଇଥିଲେ ସେମାନେ । ଘାଟର ଶେଷ ଫେରୀଟି ବୋଲ୍‌ଗାଟି ପ୍ୟାଲେସ୍ ପାଖକୁ ଯିବାକୁ ପ୍ରସ୍ତୁତ ହୋଇ ରହିଥିଲା । ଫେରୀଟି ଭାସି ଚାଲିଲା । ସାଧନା ନିର୍ଭୟରେ, ସ୍ୱଚ୍ଛନ୍ଦରେ ଶୋଭନର ଛାତିକୁ ଆଉଜି ବସି ରହିଥିଲା । □□

ସୁଚରିତା, ଶାରଦୀୟ ବିଶେଷାଂକ, ୧୯୮୯

# ଅଜିତେଶ ଘରଛାଡ଼ିବ

ସାମନା ଘରର ଫାଟକ ଖୋଲି ବାହାରକୁ ଆସୁଥିବା ଭଦ୍ରବ୍ୟକ୍ତି ଭବତୋଷ ମିଶ୍ରଙ୍କୁ ଏପରି ସମୟରେ ସିଗାରେଟ୍ ଧରିବା କେହି ଦେଖିନଥିବେ।

ପଡ଼ୋଶୀ ଅବସରପ୍ରାପ୍ତ ଜଜ୍ ଅନିନ୍ଦ୍ୟ ଘୋଷ୍ ସକାଳବୁଲା ପାଇଁ ତାଙ୍କୁ ଡାକିବାକୁ ଆସି ଦେଖନ୍ତି ତ ବନ୍ଧୁ ଭବତୋଷ ସିଗାରେଟ୍ ଫୁଙ୍କି ଚାଲିଛନ୍ତି।

''ଭବତୋଷ, କ'ଣ ଖବର ? ଆଜି ବାହାରିନ ଏଯାଏ ?'' ଅନିନ୍ଦ୍ୟ ଚାଲୁଚାଲୁ ପଚାରି ଦେଲେ। ପାଦ ସ୍ଥିର ହେଲାନାହିଁ, ''ନା, ଆଜି ଯିବିନି'' ସଂକ୍ଷିପ୍ତ ଉତ୍ତର। ''ତେବେ ମୁଁ ଆସୁଛି, ଫେରିବାବେଳେ ଚା' ଖାଇବି।''

ବଡ଼ବୋହୂ ଅନୁପମା ଚା' କରିବ କି ନାହିଁ ଦୋଦୋପାଞ୍ଚ ହେଉଛି। କେତେବେଳେ ଥରେ ଥରେ ଆସି ଦାଣ୍ଡ ପାଖରେ ଚାହିଁ ଦେଇ ଯାଉଛି। ଏବେ ଯେପରି ସେ ଚା' କରିବା ସମୟଟା ସଠିକ୍ କରିନେଲା।

ଗ୍ୟାସ୍ ଜଳାଇ କ୍ଷୀର ଗରମ କରି ବସିଲା, ଟ୍ରେରେ ଚା' କପ୍, ପ୍ଲେଟ୍ ସଜାଇ ରଖୁଥିବାବେଳେ ନୂଆବୋହୂ ସୁଚେତାର ପାଉଁଜି ପିନ୍ଧା ଅଳତା ରଂଜିତ ପାଦ ଦୁଇଟି ତା' ଦୃଷ୍ଟିରେ ପଡ଼ିଲା। ସଦ୍ୟସ୍ନାନ କରି ଆସିଛି; ସତେଜ ମୁଖଟି ବେଶ୍ ପ୍ରସନ୍ନ।

''ଅଜୁଙ୍କ ପାଇଁ ଚା' ନେବୁ ? କରିଦେଉଛି ରହ।''

"ମୁଁ କରେ, ନାନୀ।"

"ଟିକିଏ ଡେରି କରିବା। ପଡିଶାଘରର ଅନିନ୍ଦ୍ୟ ମଉସା ଆସିଯିବେ ଦଶମିନିଟ ଭିତରେ।

ଅଜୁ ଆଉ କ'ଣ କହୁଥିଲେ? ଏସବୁ କ'ଣ ଠିକ୍ ହବ?" ଅନୁପମା ମୁରବୀ ସ୍ୱରରେ ପଚାରୁଛି। ମୁଣ୍ଡରେ ଅଧିକ ଓଢଣାଟାଣି ପିଢାଟିଏ ପକାଇ କଣକୁ ବସିଛି ସୁଚେତା। ଅଳ୍ପ ଦୂରରେ କାନ୍ଥକୁ ଆଉଜି ବସିଛି ଅନୁପମା।

ସୁଚେତା କ'ଣ ଉତ୍ତର ଦେବ? ସେ ତ କିଛି ଜାଣିନି, କିମ୍ବା ସାମାନ୍ୟ ଆଭାସ ପାଇଥିଲେ ମଧ୍ୟ ଏସବୁରେ ମୁଣ୍ଡ ଖେଳାଇନି। ଅଜିତେଶଙ୍କ ସହ ଏମିତି କିଛି କଥାବାର୍ତ୍ତା ହୋଇନାହିଁ ତା'ର। ଏବେ ସେ ଭାବୁଛି, କିମିତି ଶୀଘ୍ର ଚା' ନେଇ ଉପରକୁ ଯିବ। ହେଇ, ଉଠି ସାରିବେଣି। ଯେ ମୋତେ ଚା' କରେଇ ଦେଉ ନାହାନ୍ତି କିମ୍ବା ନିଜେ କରୁ ନାହାନ୍ତି।

ଅଜିତେଶ ପାହାଚରେ ଓହ୍ଲାଇ ସିଧା ଆସି ରୋଷେଇ ଘର ପାଖରେ। ସୁଚେତା ସେଆଡେ ଚାହିଁ ଟିକିଏ ହସିଦେଲା, ସେ ପାଖରୁ ଦୃଷ୍ଟି ଫେରୁନାହିଁ। ବଡବୋହୂ ଅନୁପମା ପଚାରିଥିବା ପ୍ରଶ୍ନଟି ଏପର୍ଯ୍ୟନ୍ତ ଚିତ୍ରଟିଏ ହୋଇ ଝୁଲୁଛି। ଅନୁପମାକୁ ଚାହିଁଲେ ନବବଧୂ ସୁଚେତା ବ୍ୟତୀତ ଅନ୍ୟ ଯେ କେହି ସେ ଭାବ ବୁଝିପାରିବ।

ଅଜିତେଶର ନିଦ ଛାଡିନି। ତଥାପି ସେ କହିଲା, "ଭାଉଜ, ଆମ ଚା' ଉପରକୁ ପଠାଇଦେବ। ଆରେ, ତୁମେ ଏଠି କ'ଣ କରୁଛ?" ସୁଚେତାକୁ ହଠାତ୍ ଦେଖିପକାଇବାର ଅଭିନୟ କଲା ଅଜିତେଶ।

"ମୋର ଆସ୍ କଲରର ମୋଜା କାହିଁକି କାଢିଛ? ମୁଁ ତ ବ୍ରାଉନ୍ ପ୍ୟାଣ୍ଟଟା ଆଜି ପିନ୍ଧିବି। ଆସ, ଆସ, ଖୋଜି ଦବ।"

ସୁଚେତାର ଅଣ୍ଟାପାଖରେ ହାତ ଦେଇ ନେଇ ଯାଉଛି ଅଜିତେଶ୍।

ସେଇ ପୂର୍ବ ପ୍ରଶ୍ନଟି ଅନୁପମା ପଚାରିବ ପଚାରିବ ହୋଇ ନୀରବରେ ଚା' ପାଣି ବସାଉଛି। ଅନ୍ୟଦିନ ହୋଇଥିଲେ ସୁଚେତାକୁ ମିଛକହି ଉପରକୁ ଡାକିନେବା କଥାରେ ହସି ପକାଇ ସେ କହିଥାନ୍ତା, "ଦେଖ, ଯାଙ୍କର ସକାଳୁ ମୋଜା, ଜୋତା ଖୋଜା ହେଲାଣି।"

ଏବେ ଅନୁପମା ନୀରବ। ଅଷ୍ଟମଙ୍ଗଳା ନଯାଉଣୁ ଅଜିତେଶର ଏ ନିର୍ଲଜପଣ

କେହି ଏଘରେ ପସନ୍ଦ କରୁ ନାହାଁନ୍ତି। କିମିତି ଏ କଥା ନିର୍ବୋଧ ଅଜିତେଶକୁ ସେ ବୁଝେଇବ !

"ଅଜୁ, ଏସବୁ ଠିକ୍ ହଉନି।"

"ମାନେ, କୋଉକଥା ? ସୁଚେତାକୁ ନେଇ ବୁଲିଯିବା ? ସକାଳୁ ସନ୍ଧ୍ୟା ଯାଏ ଗପିବା, ବା ସକାଳେ ଶୀଘ୍ର ବିଛଣା ନ ଛାଡି ଅନେକ ସମୟ ପର୍ଯ୍ୟନ୍ତ ଶୋଇ ରହିବା ? ଏଇ ସବୁ ତ ? କ'ଣ, ତୁମର ସହ୍ୟ ହଉନି କି ?"

"ମୋ କଥା କାହିଁକି ପଡିଛି ? ମୁଁ ତ ଆଉ ସାତଟା ଦିନ ରହିପାରିବି କି ନାହିଁ, ତୁମ ଭାଇ ଆସିଲେ ଯିବାକୁ ପଡିବ। ପିଲା ଦୁଇଟା ମାସେ ହେଲାଣି କିଛି ପଢି ନାହାଁନ୍ତି।"

ଅଜିତେଶ ହସିଦିଏ ଭାଉଜ ଅନୁପମାର କଥା ଶୁଣି ଆଉ ଏଣେ ନୀଳ ବନାରସୀ ଶାଢୀ ସହ ମୁକ୍ତାର ସେଟ୍‌ଟି ପିନ୍ଧି ନୀଳପରୀଟି ଭଳି ଦିଶୁଥିବା ସୁଚେତାକୁ ଚାହିଁଦେଇ। ଆବିଦ୍, ଆୟେଶାଙ୍କ ଘରେ ରାତ୍ରୀ ଭୋଜନର ନିମନ୍ତ୍ରଣ। ସେମାନେ ବାହାରିଛନ୍ତି।

ସୁଲକ୍ଷଣାଙ୍କର ମୁଣ୍ଡ ବଥାଉଛି ସନ୍ଧ୍ୟାରୁ। ତଥାପି ବଡବୋହୂ ଅନୁପମାକୁ ଡାକି ସେ ତାଗିଦ୍ କରୁଛନ୍ତି, "କାଣ୍ୟକୁବ୍ଜ ବ୍ରାହ୍ମଣ ପରିବାରର ନୂଆବୋହୂଟା। ଆଠମଙ୍ଗଳା ଯାଉ ନ ଯାଉଣୁ ପଦାକୁ ଗୋଡ କାଢିବ ! କ'ଣ ନା ପୁଣି ବିଧର୍ମୀ ଘରେ ଭାତ ଖାଇବ !! ଏସବୁ ଭଲ ହଉନି ବୋହୂ। ଅଜିକୁ ତୁ ବୁଝେଇ ଦେ। ଆମେ ବଞ୍ଚିଥିବା ତକ ଏତକ ଟିକେ ମାନି ଚଳୁ।"

କିମିତି କେଜାଣି ଏ ଶେଷ କଥା ପଦକ ଅଜିତେଶ କାନରେ ପଡିଗଲା। "ବୋଉ, ମୋତେ କହ, ଭାଉଜଙ୍କ ହାତରେ କାହିଁକି ଖବର ପଠଉଚୁ ? ଆୟେଶା ଭାବୀକୁ ତୁ ସ୍ନେହକରୁ। ଏ ଝିଅଟି ମୋ ଘରେ କାହିଁକି ଜନମ ହେଲାନି ବୋଲି କହିହଉ। ଅଥଚ ଏ ଭାବ ତୋ ମନରେ ! ମଣିଷକୁ ତୋର ଏତେ ଘୃଣା ! ଚାଲ ସୁଚେତା, ଡେରି ହଉଚି।"

ଅଜିତେଶ ସୁଚେତାକୁ ନେଇ ଚାଲିଗଲା। ଠାଏକିନା ଚାପୁଡାଟାଏ ଗାଲରେ ବସିଗଲା ସୁଲକ୍ଷଣାଙ୍କର।

ଚା' ପାଣି ଫୁଟୁଛି। ଅଜିତେଶ, ସୁଚେତା ଉପରଘରେ ତେଣେ ଚା' ପାଇଁ ଅପେକ୍ଷା କରିଛନ୍ତି। ବାହାର ବଗିଚାରେ ଅନିନ୍ଦ୍ୟ ଘୋଷଙ୍କର ହସ ଶୁଣାଯାଉଛି।

ଭବତୋଷ ଚା' ନ ପିଇ ସକାଳୁ ଦୁଇଘଣ୍ଟା ବିତାଇ ଦେଲେଣି ।

ଅନୁପମା ଠିକା ଚାକିରାଣୀ ହେନାକୁ ଡାକି ଚା' ଦି' କପ୍ ଧରେଇ 'ନୂଆବୋହୁ ଓ ସାନବାବୁଙ୍କୁ ଦେଇଦେ' କହି ତରତରରେ ଶ୍ୱଶୁର ଓ ଅନିନ୍ଦ୍ୟ ଘୋଷଙ୍କ ଚା'ଟା ନେଇ ଦେଇଆସିଲା । ପ୍ଲେଟରୁ ବିସ୍କୁଟ୍ ଖଣ୍ଡିଏ ଉଠାଇ ନେଇ ଅନିନ୍ଦ୍ୟ ଘୋଷ କହୁଛନ୍ତି, ''ତୁମେ ଏଥିପାଇଁ ଚିନ୍ତିତ କାହିଁକି, ଭବତୋଷ ?''

ଅନୁପମା ଫେରି ଆସୁଆସୁ କାନରେ ପଡିଥିବା କଥାପଦକ ଦୋହରାଇଲା । ଏ କେତେଦିନ ହେବ ଶ୍ୱଶୁର ଚିନ୍ତିତ, ଶାଶୁ ବିରକ୍ତ । ନଣନ୍ଦ ଦୁହେଁ ନୂଆଭାଉଜଙ୍କୁ ଦେଖି ମୁହଁ ମୋଡୁଛନ୍ତି । କ'ଣ ଏ ଘର !

ସୁଚେତାର ଭୁଲ୍ ନା ଅଜିତେଶର ?

ଭବତୋଷବାବୁ ବାହାରୁ ଆସି ଗାଧୁଆଘର ଆଡେ ଯାଉଛନ୍ତି । ସୁଲକ୍ଷଣା ଡାକିଲେ, ''ହଇହୋ, ଟିକେ ଶୁଣିବ ? ଦେହଟା କିଛି ଭଲ ଲାଗୁନି । ମୁଣ୍ଡ ବିନ୍ଧୁଛି ଦୁଇଦିନ ହବ ।''

ସାର୍ଟ ଖୋଲି ତଉଲିଆ ଖୋଜି ହେଲେ ଭବତୋଷ । ଅନ୍ୟମନସ୍କ ଭାବରେ ପତ୍ନୀକୁ ନ ଚାହିଁ ଉତ୍ତର ଦେଲେ, ''ବାଜେ ଚିନ୍ତା କରନା, ସବୁଠିକ୍ ହେଇଯିବ ।''

''ମୁଁ ଏକା ଚିନ୍ତା କରୁଛି ? ଆଉ ତୁମେ ? ଘରର ମାନମହତ ପଦାରେ ପଡିବ, ସାଇ ପଡିଶାରେ ବନ୍ଧୁବାନ୍ଧବଙ୍କୁ ମୁହଁ ଦେଖେଇ ହବତ ?''

''ହୁଁ,'' ଏତିକି କହି ତରତରରେ ଭବତୋଷ ଗାଧୁଆଘରେ ପଶିଲେ ।

ନିୟମିତ ଗୋଟିଏ ସମୟରେ ଗାଧୋଇ ଠାକୁର ପୂଜା କରିବାରେ ତାଙ୍କର ବ୍ୟତିକ୍ରମ ହୋଇଥିଲା ସେଦିନ । ସୁଲକ୍ଷଣାଙ୍କର ମାନସିକ ଅସ୍ଥିରତା, ବ୍ୟର୍ଥତାର ଦୀର୍ଘଶ୍ୱାସ ତାଙ୍କୁ ଛୁଇଁ ପାରୁ ନଥିଲା । ସେ ନିଜ ଭାବନାରେ ବୁଡି ରହୁଥିଲେ ।

ବଡପୁଅ ଅନିମେଷ ପରେ ଅଜିତେଶର ଜନ୍ମ । ଝିଅ ଦୁଇଟି ସାନ । ତିନିଜଣଙ୍କର ବିବାହ ଦାୟିତ୍ୱ ସରିଛି ଚାକିରୀରେ ଥିବାବେଳେ । ସାନ ଅଜିତେଶ ଘରଛାଡି ବାହାରେ ବାହାରେ ବୁଲିଲା । ତା' ଚାକିରି ସେଇଭଳି । କିଛିଦିନ ବମ୍ବେରେ ଥିଲା । ଏବେ ଆସିଛି ଓଡିଶା । ଓଡିଶା ଅର୍ଥ ଏଇ ସହର କହିବାକୁ ହେବ । ସରକାରଙ୍କ କଂପ୍ୟୁଟର ସଂସ୍ଥା ତ ଏଇଠି, ଅଜିତେଶର ଚାକିରି ମଧ । ଅବଶ୍ୟ ଅଳ୍ପ କେତେ ବର୍ଷପାଇଁ ସେ ବିଦେଶ ଯାଇପାରେ ।

ଭବତୋଷଙ୍କ ହର୍ଷୋଜ୍ଜଳ ମୁଖଟି ଅଧିକ ଉତ୍‌ଫୁଲ୍ଲ ହୋଇଉଠେ ତାଙ୍କ ବନ୍ଧୁମାନଙ୍କ

ସହ ଏ ସଂପର୍କରେ ଆଳାପ କରିବାବେଳେ, ବିଶେଷ କରି ସକାଳବୁଲା ଏବଂ ଚା' ଆସର ସମୟରେ।

ସେଇ ସୁଖୀ ସଂସାରର ଦୁର୍ଗ ସତେକି ଭୁଷୁଡି ପଡିଛି ଏବେ ଅଳିତେଶର ଏଇ ସମର ଘୋଷଣା ପରେ।

''ଘର? ଘରର ସଂଜ୍ଞା କ'ଣ? ଚାରିକାନ୍ଥ ଘେରା ସ୍ଥାନଟି ନା ବ୍ୟକ୍ତିକୁ କେନ୍ଦ୍ରକରି ତା'ର ପରିସର?'' ଅନିମେଷ, ଅନୁପମାଙ୍କ ସହ ଦ୍ୱିଧାହୀନ ଭାବରେ ଆଳାପ କରୁଛି ଅଳିତେଶ।

''ମୁଁ ବିବାହ କରିବି ଗୋଟିଏ ସର୍ତ୍ତରେ- ବିବାହପରେ ମୁଁ ଏଠି ରହିପାରିବିନି।''

''ଏଇଟା କ'ଣ ବିଦେଶ କରି ପାଇଲ କି? ବାହା ହବା ଆଗରୁ ଅଲଗା ଘରଟିଏ ଖୋଜିବ ଆଉ ହନିମୁନ୍‌ରୁ ଫେରି ସେଇଘରେ ତୁମର ସୁଖୀ ଦାମ୍ପତ୍ୟ ଜୀବନ ବିତାଇବ? ଏଇୟା ବୋଧହୁଏ ତୁମର ସର୍ତ୍ତ?'' ଅଳିତେଶ କିଛି କହିବା ପୂର୍ବରୁ ଅନୁପମା ସବୁ ଯେପରି ବୁଝିନେଇଛି।

''ବିଦେଶୀଙ୍କ ଠାରୁ କିଛିଟା ଭଲକଥା ଶିଖିଲେ କ୍ଷତି କ'ଣ, ଭାଉଜ?''

ଅନିମେଷ ଏ ପର୍ଯ୍ୟନ୍ତ ଗାମ୍ଭୀର୍ଯ୍ୟ ରକ୍ଷାକରି ଏଦୁହିଁଙ୍କ କଥା ଶୁଣିବାରେ ମନ ଦେଇଥିଲା। ନିଜର ମତ ଜଣାଇବାକୁ ଯାଇ ସେ କହିଲା, ''ଆମେ ସମସ୍ତେ ଚାହୁଁ ତୁ ସୁଖରେ ରହ। ତେଣୁ ତୁ ଯଦି ସୁଖୀ ହେବୁ, ଘରେ ଏ ବିଷୟରେ ଅମତ ହେବ ବା କିଏ?''

''ବାପା, ବୋଉଙ୍କୁ ପଚାରି ଦେଉନ ପଦେ? ଏ କି କଥା? ପରେ ଯଦି ପୁଣି...'' ଅନୁପମା ବାଧ କରୁଛି।

''କିଛି ପଚାରିବା ଆବଶ୍ୟକ ନାହିଁ। ଅଳି କ'ଣ ପିଲା ହୋଇଛି? ଯାହା ଭଲ ତା' ପାଇଁ, ସେ କ'ଣ ଚିନ୍ତା କରି ପାରିବନି?''

ଏସବୁରୁ କିଛିଟା କଥା ଅବଶ୍ୟ ଭବତୋଷଙ୍କ କାନରେ ପଡିଥିଲା, କିନ୍ତୁ ସେତେବେଳେ କିଛି ଦୁର୍ଭାବନା ତାଙ୍କୁ ଛୁଇଁ ପାରୁ ନଥିଲା। ଟିକିଏ ହସରେ ଏ ପ୍ରସଙ୍ଗ ସେ ଉଡେଇ ଦେଇ ନିଜକୁ ସାନ୍ତ୍ୱନା ଦେବାଭଳି କହିଲେ, ''ଏବେକା ପିଲା ଏମିତି କେତେ କଥା କହନ୍ତି। ଭାଉଜକୁ ଥଟାରେ କ'ଣ ପଦେ କହିଦେଲା, ଏଇକଥା ଧରି ବସୁଛନ୍ତି ସୁଲକ୍ଷଣା!''

"ବାପା, ଖାଇବେ ଆସନ୍ତୁ।"

ନିଜ ଚିନ୍ତାରୁ ଫେରି ନୀରବରେ ଖାଇବସିଲେ ଭବତୋଷ। "ଆଉ ଟିକିଏ ସାଦା ତରକାରୀ ଦିଏ, ଖଣ୍ଡେ ମାଛଭଜା?" ଶ୍ୱଶୁରଙ୍କୁ ବଳେଇ ବଳେଇ ଖୁଆଉଛି ଅନୁପମା। ସୁଲକ୍ଷଣା ଗାଧୋଇସାରି ପୂଜାଘରେ ଜପ କରୁଛନ୍ତି।

"ଅଜି ଖାଇଲାଣି? ସାନବୋଉ ଆଜି କ'ଣ ରାନ୍ଧିଛି? ତାକୁ ମାଛତରକାରୀଟା କରିବାକୁ ଦେଲନି?"

ନିଜକୁ ହାଲ୍‌କା କରିବାକୁ ଅନୁପମାକୁ ଏମିତି କେତେକଥା ପଚାରୁଥିଲେ ଭବତୋଷ। ଉତ୍ତର ଦେଲେ ସୁଲକ୍ଷଣା। ଏବେ ପୂଜାସାରି ସେଇ ଖାଇବା ଟେବୁଲ୍ ପାଖରେ ସେ ବସିଲେଣି। ବଡବୋହୂ ଅନୁପମା ରନ୍ଧାଘରେ ତାଙ୍କ ପାଇଁ ଭାତ ବାଢୁଛି। ସୁଲକ୍ଷଣା କହିଲେ,

"କ'ଣ ବସି ଏତେ ପଚାରୁଛ କିଓ? ତୁମେ କ'ଣ କିଛି ବୁଝିପାରୁନା କ'ଣ ଚାଲିଛି ଏଠି? ଅଜି ନୂଆବୋହୂଟାକୁ ନେଇ ସକାଳ ପହରୁ ସିନେମା ଯାଇଛି।"

"ଓ ବୁଝିଲି, ନୁନ୍ ସୋ ଯାଇଥିବ, ଏବେ ଫେରିଆସି ଖାଇବ! ବ୍ୟସ୍ତ ହଉଚି କାହିଁକି?" ନିଶ୍ଚିନ୍ତରେ କହିଲେ ଭବତୋଷ।

"ଏବେ କୁଆଡେ ଆସିବ? ଦେଖିବ, ସେଇରାତିକୁ। ତା' ଭାଉଜକୁ ପରା କହିଯାଇଛି। କୋଉଠି ହୋଟେଲରେ ଖାଇବେକି କ'ଣ..."

ବିରକ୍ତିରେ ସୁଲକ୍ଷଣାଙ୍କର ସୁନ୍ଦର ରେଖାବହୁଳ ମୁହଁଟି ଅଧିକ କୁଞ୍ଚିତ ହୋଇ ଉଠିଲା।

"ଆଚ୍ଛା ସୁଲୁ, ତୁମେ ଟିକେ ଶାନ୍ତିରେ ଖାଅ। ପ୍ରତିକଥାରେ ଏମିତି ବ୍ୟସ୍ତ ହୋଇ ଉଠୁଛ କାହିଁକି?"

ସୁଲକ୍ଷଣା ତାଙ୍କୁ ଟିକିଏ ଚାହିଁ ଦେଇ ଚୁପ୍ ହୋଇଗଲେ। ବଡବୋହୂ ହାତରୁ ପାଣି ଗ୍ଲାସଟା ନେଇ ଢୋକେ ପିଇଦେଇ କହିଲେ, "ଏସବୁ ଦେଖି ମୁଁ ଆଉ ବଞ୍ଚି ପାରିବିନି ମ।"

ଭବତୋଷ ସ୍ଥିର ଚିତ୍ତରେ ଉତ୍ତର ଦେଲେ, "ଏତେ ବଡ କଥା କାହିଁକି କହୁଚ? କ'ଣ ତୁମର ଅଭାବ? ପୁଅ, ବୋହୂ, ଝିଅ, ଜ୍ୱାଇଁ, କିଏ ତୁମକୁ ହତାଦର କରୁଛି?"

"ଏଲିର ଝିଅ, ପୁଅ ବାରଟା ବେଳୁ ଇସ୍କୁଲରୁ ଫେରି ଡିଆଁ ମାରୁଥିଲେ। ଏବେ ତାଙ୍କ ଗାଧୁଆ, ଖୁଆଇବା ସାରି ମୁଁ ପୂଜାଘରକୁ ଗଲି। ଗୀତୁ ପଡ଼ିଶାଘରକୁ ଫୋନ୍‌କରି ଖବର ଦେଇଛି। ସେ ଆଉ କ୍ୱାଇଁ ଦିନ ଚାରିଟା ବେଳେ ଆସି ପହଞ୍ଚିବେ। ନୂଆ କ୍ୱାଇଁଟା ଘରକୁ ଆସିବ। ଘରେ ଭଲ ଜଳଖିଆ ଟିକିଏ କ'ଣ ତିଆରି ହବ। ରାତିକୁ ଏଠି ଖାଇକରି ଯିବେ ସେମାନେ। ଘରେ ଭଲ ମନ୍ଦ ରନ୍ଧାଟିକେ ହବ। କିଏ କରିବ ? କିଏ ବୁଝିବ ଏସବୁ ?"

ଭବତୋଷ ଏସବୁ ଅଧିକ ଶୁଣିବାକୁ ଚାହୁଁନଥିଲେ। ଖାଇବା ଟେବୁଲ୍ ପାଖରୁ ଉଠି ଯାଉ ଯାଉ କହିଲେ, "ତୁମେ ବ୍ୟସ୍ତ ହବା ଦରକାର ନାହିଁ। ଆମ ଅନୁ ସବୁ ସଂଭାଳି ନେବ। ତୁମର ତ ଦେହ ଭଲ ନାହିଁ। ଏତେଆଡୁ ଚିନ୍ତା କରୁଛ କାହିଁକି ?"

ସୁଲକ୍ଷଣା ଠିକ୍ ଜାଣନ୍ତି ଅନୁପମା ସମସ୍ତଙ୍କ ଖବର ବୁଝିପାରିବ, ତଥାପି ତାଙ୍କର ଅସନ୍ତୋଷ, ସାନବୋହୂ ସୁଚେତା ଏସବୁ ବୁଝୁନି କାହିଁକି ? ଅଢିତେଶ ଏ ଘରର ନୀତି ନିୟମ ଭାଙ୍ଗି ଦେଉଛି। ଏ ଘରଟା ତାଙ୍କ ନିଜ ଘର ପରି ଲାଗୁନି। ସୁଲକ୍ଷଣା ବିମର୍ଷ ହୋଇ ଉଠୁଛନ୍ତି।

ଅନୁପମା ଶାଶୁଙ୍କୁ ଟିକେ ଚାହିଁଦେଇ ପ୍ରେସରକୁକ୍‌ର ଧୋଇବାରେ ମନ ଦେଲା। ପ୍ରେସରକୁକ୍‌ରରେ ଆଳୁ କିଛି ସିଝେଇଦେଲେ ଆଳୁଚପ୍ କରିବାକୁ ସୁବିଧା ହବ। ମିଠା, ଆଳୁଚପ୍, ଚା'। ଉପରଓଳି ସାନନଣନ୍ଦ, ନଣନ୍ଦେଇ ଓ ଅନ୍ୟମାନେ ସମସ୍ତେ ଖାଇବେ। ଏଲି ସ୍କୁଲରୁ ଫେରିଲେ ଆଗ ଦରକାର କପେ ଚା', ତା'ପରେ ଜଳଖିଆ। ପରଟା ଦୁଇଖଣ୍ଡ କରିଦେଲେ ସକାଳ ତରକାରୀ, ଭଜା ସଙ୍ଗେ ଚଳିଯିବ ତାଙ୍କର। ଦିନ ଦଶଟାରୁ ଭାତ ଖାଇ ଯାଇଥିବା ନଣନ୍ଦଙ୍କର ଖାଲି ଆଳୁଚପ୍, ମିଠାରେ ଭୋକ ମରିବନି।

"ଆଚ୍ଛା ଭାଉଜ, ଏଲି କ'ଣ ଏସବୁ ଭାବି ପାରେନା ? ବାହାହୋଇ ସାରିବାପରେ ତା' ପିଲାଙ୍କୁ ନେଇ ଏଠି ରିଟାୟର୍ଡ ବାପାଙ୍କ ଟଙ୍କାରେ ଚଳିବାକୁ ତାକୁ ଖୁସି ଲାଗୁଛି ? ବୋଉଟା ବି ସେମିତି। ସେ ତ ତାକୁ କହିପାରନ୍ତା। ଏ ବୟସରେ ଚଗଲା ପିଲା ଦୁଇଟାଙ୍କ କାମ କରି କରି ସେ ବି ନୟାନ୍ତ।"

ଅଢିତେଶ ଅପ୍ରିୟ ସତ୍ୟ କହେ। କିନ୍ତୁ କିଏ ଏଠି ବୁଝେ ?

ଏଲିଙ୍କର ଶାଶୁଘରେ ସବୁ ସୁବିଧା। ଅତୁଲଙ୍କର ବିଜିନେସ୍ ଖୁବ୍ ଭଲ

ଚାଲିଛି। ଘର, ଗାଡି, ବ୍ୟାଙ୍କ୍ ବାଲାନସ୍, କେଉଁଥିରେ ଅଭାବ ନାହିଁ। ସ୍ତ୍ରୀ ପିଲାଙ୍କ ସହ ବାପା, ମା, ଭାଇ ଭଉଣୀ, ସମସ୍ତଙ୍କୁ ଖୁସିରେ ରଖିବା ପାଇଁ ସେ କେତେ ଯୋଜନା କରନ୍ତି। ଏଲିଙ୍କର କିଛି ମନ ମାନେନା। ଅଜି ସତ କହେ, ''ଯାହାହେଲେ ଭାଉଜ, ଶାଶୁ ଘରଟା ଶାଶୁଘର, ସେଠି ବାପଘର ଆରାମ୍ କୋଉଠି ମିଳିବ? ପୁଣି ଏଠି ନର୍ସରୀ ସ୍କୁଲ ଚାକିରିଟା ଏଲିର ତ ଟଙ୍କା ପାଇଁ ନୁହେଁ, ଶାଶୁଘରୁ ନିଷ୍କୃତ ପାଇବାର ଏକ ପନ୍ଥା।''

ଏଲି ରାଗିଯାଏ ଏକଥା ଶୁଣି।

''ଠିକ୍ ଅଛି। ଏଇ ସହରରେ ଘର ନେଇ ଆୟା ରଖି ମୁଁ ଭଲରେ ଚଳିପାରିବି। ତୁମମାନଙ୍କୁ ଯଦି ଅପମାନ ନ ଲାଗିବ ମୋର କ'ଣ ଅଛି?''

''ଅପମାନ?'' ହୋ ହୋ କରି ହସିଉଠେ ଅଜିତେଶ୍।

''ନାଇଁଲୋ ଏଲି, ବୋଉକୁ ପାଖକୁ ନେଇଯିବୁ। ସେ ସବୁ ସଂଭାଳି ନେବ। କେତେଟା ଟଙ୍କା ରୋଜଗାର କରିବୁ ଯେ ସେଥିରେ ପୁଣି ଆୟା, ରୋଷେୟା ରଖିପାରିବୁ? ତା' ଛଡା ବାହାର ଲୋକଙ୍କ ଦାୟିତ୍ୱରେ ପିଲାଙ୍କୁ ଛାଡିବା ଠିକ୍ ନୁହେଁ।''

ଏଲି ରାଗ ତମ ତମ ହୋଇ ସ୍କୁଲ ପଳେଇ ଯାଏ। କ୍ଷଣିକରେ ରାଗ, ଅଭିମାନ କୁଆଡେ ଉଭେଇଯାଏ। ପୁଣି ଆସି ପାଟିକରେ। ''ଭାଉଜ ମ, ଚା' କପେ, ଟିକେ ଶୀଘ୍ର।'' ଅନୁପମା ହସୁଛି ପଛକଥା ମନେ ପକାଇ।

ଅଜିତେଶ ବମ୍ବେରୁ ଆସିବା ପରେ ଘରର କାରବାର ତାକୁ ଅଦ୍ଭୁତ ଲାଗୁଛି। ବାପାଙ୍କ ପେନ୍‌ସନ୍ ଟଙ୍କା, ଭାଇଙ୍କ ଦରମା। ଘରେ ବହୁ ପ୍ରକାର ଖର୍ଚ୍ଚ, କେତେ ମାସ ତଳେ ସାନ ଭଉଣୀର ବାହାଘର ସରିଛି। ଧାର କରଜରେ ବୁଡିଛନ୍ତି ସେମାନେ, ଅଥଚ ଭଉଣୀ ଦୁହିଙ୍କର ରାଜକୀୟ ଚଳଣି ଏବେବି ଅକ୍ଷୁଣ୍ଣ। ସେଥିପାଇଁ ବାପା, ବୋଉ, ଭାଇ, ଭାଉଜଙ୍କୁ କିଭଳି କଷ୍ଟ ସ୍ୱୀକାର କରିବାକୁ ପଡୁଛି ତା' ଏମାନେ ବୁଝୁନାହାଁନ୍ତି।

ସାନ ଭଉଣୀ ରୀତୁର କେତେ ବରାଦ। ଭଳିକି ଭଳି ନୂଆ ଡ୍ରେସ। ଜୋଇଁଙ୍କ ପାଇଁ କେତେ ପ୍ରକାରର ଜିନିଷ। ଅଜିତେଶ୍ କିଛି ଉତ୍ତର ଦେବା ପୂର୍ବରୁ ସୁଲକ୍ଷଣା ସେପାଖରୁ ପାଟି କରନ୍ତି, ''ସାନ ଭଉଣୀଟା କ'ଣ କହୁଛି, ନେଇ-ଆସିବୁରେ ଅଜି।''

''ଦେଖ ଭାଉଜ, ଏ ଲମ୍ବା ଲିଷ୍ଟ। ଏଲି, ତା' ପିଲା, ଗୀତୁ, ରାହସ, ରାହସର ଭଉଣୀ। ଆଉ ତୁମେ କାହିଁକି ବାଦ ଯିବ ? କୁହ, କ'ଣ ଦରକାର ?'' ଅନୁପମା ପାଟିରେ ଆଙ୍ଗୁଠି ଦେଇ ଚୁପ କରାଏ, ''ଥାଉ, ଶୁଣିବେ।''

କେବେ କିପରି ଖୁସିରେ ଆଣିବା ଅଲଗା କଥା। କିନ୍ତୁ ପ୍ରତିଥର ଏମାନଙ୍କର ଦାମୀ ଦାମୀ ବରାଦ। ମଧ୍ୟବିତ୍ତ ପରିବାରରେ ଏ ବିଷୟ ସମସ୍ତେ ବୁଝିବା କଥା।

ତରତର ହେଲା ଅନୁପମା। ରୋଷେଇ ଘର କାମ ସରୁନି। ଅଜିତେଶ୍ କହିଦେଇଛି, ''ତୁମେ ସବୁ କେହି ଆମକୁ ଅପେକ୍ଷା କରିବନି। ଆମର କିଛି ଠିକ୍ ନାହିଁ।''

ଅନୁପମା କିନ୍ତୁ ଅପେକ୍ଷା କରିବ, ଅଜିତେଶ୍ ସୁଚେତାକୁ ନୁହଁ। ଗୀତୁ, ରାହସ, ଏଲି ଫେରିବା ବେଳ ହେଲାଣି। ଏଣେ ପିଲାମାନେ କ୍ଷୀର ପିଇବେ। ରୋଷେଇ ଘରେ ଗଦାଏ କାମ। ଶୋଇହେବ କେଉଁଠି ?

ସୁଲକ୍ଷଣାଙ୍କର ଅଯଥା ବ୍ୟସ୍ତତା। ସେ ପଚାରୁଛନ୍ତି, ''ବୋହୂ, ଅଜି ଫେରିନି ଏଯାଏ ? ମୁଁ ଜାଣିଛି, ଏଘର ଆଉ ଘର ହୋଇ ରହିଲାନି।''

''କ'ଣ ତୋର ଅସୁବିଧା ହେଲା, ବୋଉ ? ଆମେ ଆସିଲୁଣି। ଖାଇବାର ଝମେଲା ବି ସାରି ଆସିଛୁ। ତୁ ନିଶ୍ଚିନ୍ତରେ ଶୋଇପଡ। ଘର ଠିକ୍ ଘର ଭଳି ଚାଲିବ।''

ସୁଲକ୍ଷଣା ବାହାରକୁ ବାହାରି ଆସିଲେ, ''କିରେ, ଅଷ୍ଟମଙ୍ଗଳା ନ ଯାଉଣୁ ନୂଆ ବୋହୂଟା ଏତେ ଆଡେ ବୁଲିବା କ'ଣ ଠିକ୍ ହଉଛି ?''

''ରଖ୍ ସେ ସବୁ ସଂସ୍କାର, ମୋତେ ସେ ସବୁ ବୁଝାନା।'' ଅଜିତେଶ ବିରକ୍ତ ହୋଇ ଉଠିଲା। ଅନୁପମା ସନ୍ତ୍ରସ୍ତ ସୁଚେତା ସେଠାରୁ ଯିବ କି ନାହିଁ ଭାବୁଛି।

ଆର ଘରୁ ବିଛଣାରୁ ଉଠିଆସିଲେ ଭବତୋଷ। ଦେଖିଲେ ମନେ ହେଉଛି ତାଙ୍କର ସୁନିଦ୍ରାରେ ବ୍ୟାଘାତ ଘଟିଛି।

''କାହିଁକି ପାଟି ହଉଚି ରେ ? କ'ଣ ଅସୁବିଧା ହେଲା ?''

''ମୋର ନୁହେଁ, ବୋଉର।''

''ସେ ଯାହା ଚାହୁଁଚି ତୁ ବୁଝୁନୁ କାହିଁକି ?''

''ମୁଁ ନା ଆପଣ ?''

''ଅଜି, ତୁ କ'ଣ କହିବାକୁ ଚାହୁଁ ?''

''ମୁଁ ମୋ ସ୍ତ୍ରୀ ସହ ଟିକିଏ ସୁଖ ଶାନ୍ତିରେ ରହିବାକୁ ଚାହେଁ।''

''କିଏ ମନା କରୁଚି ?''

''ଆପଣମାନେ ସମସ୍ତେ। ଆପଣଙ୍କ ନିୟମ କାନୁନ୍। ଅନ୍ଧଭାବରେ କିଛି ନବୁଝି ବୃଥାଟାରେ ଆପଣ ଘାଣ୍ଟି ହଉଛନ୍ତି। ଆମକୁ ବି ସେଇଆ କରିବାକୁ କହୁଛନ୍ତି।''

''ଏ ପରିବାରରେ ସେ ବୋହୂ ହୋଇଛି। ଶାଶୂ, ଶ୍ୱଶୁରଙ୍କ ସେବା କରିବାଟା କ'ଣ ଭୁଲ୍ କଥା ? ଏଘରର ଭଲ ମନ୍ଦ ବୁଝିବନି ?''

ସୁଚେତା ସମସ୍ତଙ୍କୁ ଆଡ଼େଇ ଧୀରେ ପାହାଚରେ ଉଠିଗଲା, ଅଜିତେଶ ସିଆଡେ ଥରେ ଚାହିଁଦେଇ ବାପାଙ୍କୁ ଉତ୍ତର ଦେଲା, ''ନା, ଏତେ ଶୀଘ୍ର ନୁହେଁ। ତାକୁ ନିଶ୍ୱାସ ମାରିବାକୁ ଦେଉନାହାଁନ୍ତି ଆପଣମାନେ।''

''ଅଜିତେଶ୍ !''

''ଆପଣ କ'ଣ ଚାହାଁନ୍ତି ? ନୂଆ ଝିଅଟିଏ ଏ ଘରକୁ ଆସୁ ଆସୁ ଏ ଘରର ସବୁ ଜଞ୍ଜାଳ ସଂଭାଳି ନେବ ? ଠିକ୍ ଯେମିତି ଗଧ ଭଳି ଭାର ବୋହି ଚାଲିଛନ୍ତି ଅନୁଭାଉଜ।''

''ବେଶ୍ କଥା କହୁଛୁ ତ ?'' ଶାନ୍ତ ଅଥଚ ଦୃଢ଼ ଭାବରେ କହିଲେ ଭବତୋଷ।

''ସତକଥା କହିବାକୁ ଆପଣ ଶିଖେଇଛନ୍ତି। ମୋ ଅନ୍ତରର କଥା ହିଁ କହୁଛି। ଏ ଘରେ ଗୋଟିଏ ଦିନ ବି ଆଉ ରହିବାକୁ ମୁଁ ଚାହୁଁନି।''

''ତେବେ ତୁ ବାହାରେ ଘର ନେଇ ରହିବାକୁ ସ୍ଥିର କଲୁ ?''

''ନା ଆପଣମାନଙ୍କୁ, ଆପଣଙ୍କ ବନ୍ଧୁପରିଜନଙ୍କୁ କଷ୍ଟ ଦେଇ ତାହା ଆଉ କରି ପାରିଲି କେଉଁଠି ? ମୋର ହାଇଦ୍ରାବାଦ୍ ପୋଷ୍ଟିଂ ହୋଇଯାଇଛି।''

''ଏବେ ବୋହୂକୁ ବି ନେଇଯିବୁ ?'' ସୁଲକ୍ଷଣାଙ୍କର ଏହି ପ୍ରଶ୍ନ ଖୁବ୍ ବିରକ୍ତିକର ମନେ ହେଲା ଭବତୋଷଙ୍କୁ। ଅଜିତେଶ୍ କିଛି ଉତ୍ତର ଦେବା ପୂର୍ବରୁ ସେ କହିଲେ, ''ହଁ, ସେ ଯଦି ଯିବ ବୋହୂ ଆଉ କାହିଁକି ରହିବ ?'' ଅଜିତେଶ୍

ନୀରବରେ ପାହାଚରେ ଉଠିଗଲା । ବିଛଣାରେ ଶୋଇରହି ଶୂନ୍ୟ ଧଳା ଛାତକୁ ଚାହିଁ ରହିଥିଲା ସୁଚେତା । ସେ ବୁଝି ପାରୁନଥିଲା ଏଭଳି ପରିସ୍ଥିତିରେ ତା'ର କର୍ତ୍ତବ୍ୟ କ'ଣ ? କ'ଣ କୋଉଠି ଭୁଲ୍ ରହିଗଲା କି ?

ଘର ପଛପାଖ ବାରଣ୍ଡାରେ ପାହାଚକୁ ଗୋଡ ଲମ୍ବାଇ ବସିଛି ଅନୁପମା । ସବୁଠି ବୁଝାମଣାର ଏକ ତୀବ୍ର ଅଭାବବୋଧ । ଏହାର ସମାଧାନ କିଏ କରିବ ? ସୁଚେତା ? ଅନୁପମା ? ଭବତୋଷ ? ସୁଲକ୍ଷଣା ? ଅଜିତେଶ ? କେତେ ଦିନ ଏମିତି ଚାଲିଥିବ କେଜାଣି ?

ବାହାର ଫାଟକ ପାଖରେ ଏକ ସଙ୍ଗରେ ସ୍କୁଟର ଓ କାର୍‌ଟିଏ ରହିବା ଶବ୍ଦରେ ଉଭୟ ଭବତୋଷ, ସୁଲକ୍ଷଣା ଚକିତ ହୋଇ ଉଠିଲେ । ଅନୁପମା ଆଗନ୍ତୁକମାନଙ୍କୁ ସ୍ୱାଗତ ଜଣାଇବା ନିମନ୍ତେ ବହୁବେଳୁ ବାହାରକୁ ଉଠିଯାଇଥିଲା ।

ଏକାଠି ଅନେକ କଳରବ ଭାସି ଆସିଲା ସେପାଖରୁ । ଏଲିର ସ୍ୱାମୀ ଅତୁଳ ଆସିଛନ୍ତି । ପାଖ ପାର୍କରୁ ପିଲାଙ୍କୁ ବୁଲେଇ ସାରି ଫେରିଆସିଛି ଏଲି, ସ୍କୁଟରରେ ଆସିଛନ୍ତି ରାହାସ ଓ ଗେହ୍ଲୀଝିଅ ରୀତୁ । ଅନିମେଶ ବି ଆସି ପହଞ୍ଚିଛି । ତା' ସ୍ତ୍ରୀ ପିଲାଙ୍କୁ ନେଇ ଯିବ ।

ଭବତୋଷ ଖୁସି ହେଲେ ସମସ୍ତଙ୍କୁ ଏକାଠି ଦେଖି । କହିଲେ, "ସମସ୍ତେ ଆସି ଖୁବ୍ ଭଲ ହେଲା । ଅଜିତେଶ୍ କାଲି ସନ୍ଧ୍ୟାରେ ଚାଲିଯାଉଛି ।" ଏମାନଙ୍କ ନୀରବତାକୁ ଅଧିକ କ୍ଷଣ ସ୍ଥାୟୀ ହେବାକୁ ନଦେଇ ସେ ପୁଣି କହିଲେ, "ତା'ର ହାଇଦ୍ରାବାଦ୍ ଟ୍ରାନ୍ସଫର୍ ହୋଇଯାଇଛି ।"

ସମସ୍ତଙ୍କୁ ଚା' ଜଳଖିଆ ଦେବାରେ ବ୍ୟସ୍ତ ରହିଲା ଅନୁପମା । ଭବତୋଷ ଇଜିଚେୟାରରେ ଆଉଜି ବସିଛନ୍ତି, ପାଖରେ ସାନଜ୍ୱାଇଁ ରାହାସ । ନିଜ ଚାକିରି, ଅଫିସ ସଂକ୍ରାନ୍ତୀୟ ବିଭିନ୍ନ ବିଷୟ ଗପି ଚାଲିଛି ରାହାସ ।

ସୁଲକ୍ଷଣା ସନ୍ଧ୍ୟାଟାରେ ବିଛଣାରେ ପଡିରହିଛନ୍ତି । ପାଖରେ ବସିଛି ସାନଝିଅ ରୀତୁ । ଭାରାକ୍ରାନ୍ତ ମନକୁ ହାଲୁକା କରିବା ପାଇଁ କଥାଛଳରେ କ'ଣ ପଦେ ପଦେ କହି ସେ ଆଖି ପୋଛୁଛନ୍ତି ।

ଅତୁଳ, ଏଲି ଖୁବ୍ ଗପୁଛନ୍ତି । ସମ୍ଭବତଃ ଏଲି ବୁଝି ଗଲାଣି ଏଠି ରହିଲେ ବାପା, ବୋଉଙ୍କ ଦାୟିତ୍ୱ ତାକୁ ସଂଭାଳିବାକୁ ହେବ । ଏ ବୟସରେ ବୋଉ ନା ପିଲାଙ୍କୁ ସଂଭାଳିବ ନା ରୋଷେଇ କରିବ । ତେଣୁ ସବୁଥର ଭଳି ଅତୁଳଙ୍କ

ପ୍ରସ୍ତାବରେ ଅରାଜି ନହୋଇ ଅଳ୍ପ କିଛି ଜିନିଷ ପ୍ୟାକ୍‌କରି ସେ ପ୍ରସ୍ତୁତ ହେଉଛି ଯିବାକୁ ।

ଅନିମେଷର ଟ୍ରେନ୍ ବିଳମ୍ବରେ ପହଞ୍ଚିବାରୁ ସେ କ୍ଳାନ୍ତ । ଅନୁପମା ଖୁସିହେଉଛି । ତଥାପି ନିଜ ଅଜାଣତରେ ଏକ ନିରୂପାୟ ଭାବ ତାକୁ ଦୁଃଖୀ କରାଉଛି ।

ସେମାନେ ସମସ୍ତେ ଗୋଟିଏ ପରିବାରର । ଏକାଠି ଖାଇବସିଛନ୍ତି । ଭବତୋଷ ବସିଛନ୍ତି ଟେବୁଲର ଗୋଟିଏ ପାଖରେ । ଅନ୍ୟ ତିନି ପାଖରେ ବସିଛନ୍ତି ତାଙ୍କ ପିଲାମାନେ । ଅନିମେଷ, ଅଜିତେଶ୍, ଏଲି, ରୀତୁ, ଅତୁଲ, ରାହାସ । ପାଖରେ ଠିଆହୋଇଛନ୍ତି ସୁଲକ୍ଷଣା । ପିଲାମାନଙ୍କୁ ବଳେଇ ଖୁଆଇବା ତାଙ୍କର ଅଭ୍ୟାସ । ରୋଷେଇଘରେ ସୁଚେତା, ଅନୁପମା । ସୁଚେତା ହାତରୁ ଖାଦ୍ୟ ପାତ୍ର ସବୁନେଇ ଯତ୍ନରେ ପରିବେଷଣ କରୁଛି ଅନୁପମା । ସମସ୍ତେ ଶାନ୍ତ ସ୍ୱରରେ ଆଳାପରତ । ଏମାନଙ୍କୁ ଏକାଠି ଦେଖିଲେ ଭବତୋଷଙ୍କ ମନରେ ଗର୍ବ ଆସେ । କେଡେ ସୁନ୍ଦର ଏ ଦୃଶ୍ୟ ! ଭବତୋଷ ଆଉଥରେ ତାଙ୍କ ପିଲାମାନଙ୍କୁ ଚାହିଁ ଦେଲେ । ଖାଇବା ପ୍ଲେଟ୍‌ରେ ତାଙ୍କ ହାତ ସ୍ଥିର ହୋଇଗଲା ।

''କ'ଣ ହେଲା, ବାପା ? ଖାଉ ନାହାନ୍ତି କାହିଁକି ?'' ଅନିମେଷର ଆଶ୍ଚର୍ଯ୍ୟ ଭାବ ସମସ୍ତଙ୍କୁ ସଂକ୍ରମିତ ହେଲା । ସେମାନେ ଭବତୋଷଙ୍କୁ ବିସ୍ମୟ ଦୃଷ୍ଟିରେ ଚାହିଁରହିଛନ୍ତି ।

ଭବତୋଷଙ୍କ ଆଖି ଓଦା ହୋଇ ଆସୁଛି କି ? ସେ କାହାକୁ ଦେଖି ପାରୁନାହାଁନ୍ତି କାହିଁକି ? ହୁଏତ ବିଜୁଳି ଆଲୋକ ସ୍ତିମିତ ହେଉଛି । ଏକମାତ୍ର ସୁଲକ୍ଷଣାଙ୍କ ଉଦାସ ଦୃଷ୍ଟି । କିମିତି ଏକ ଅସହାୟ ଭାବ ତାକୁ ଆଚ୍ଛନ୍ନ କରୁଛି । ନିଜକୁ ସଂଭାଳିନେଲେ ଭବତୋଷ । □□

ସୁଚରିତା, ଜନ୍ମଦିନ ବିଶେଷାଂକ, ୧୯୯୧

# ଏ ସେଇ ଝିଅ

ଜୀବନକୁ ଏକ ଚାଲେଞ୍ଜ୍ ଭାବରେ ଗ୍ରହଣ କରିନେଲା ସମରେଶ। ସେ କହେ, ତୁମେ ଭୟକରି ପଛକୁ ଘୁଞ୍ଚିଗଲେ ନିଜ ଭିତରର ଶକ୍ତି ଟିକକ ହରେଇ ବସିବ। ହାତରେ କଲମ ଥାଇ ସମାଜ ପାଇଁ, ମଣିଷ ପାଇଁ କିଛି ବାର୍ତ୍ତା ଲିପିବଦ୍ଧ କରିବ, ଅଥଚ ବାସ୍ତବ କ୍ଷେତ୍ରରେ ପଳାୟନପନ୍ଥୀ ମନୋବୃତ୍ତି !

ହୁଏତ ଏଇଭଳି ଚିନ୍ତାଧାରା ନେଇ ସେ ଅଧିକ ଆଗେଇ ଯାଇଥିଲା, 'ମୁଁ ଯାହା ଚାହେଁ, କରିଯିବି ନିଜ ଖୁସି ପାଇଁ। ମୁଁ ମୋ ଆତ୍ମାର ନିର୍ଦ୍ଦେଶ ବ୍ୟତୀତ ଅନ୍ୟ କିଛିରେ ଚହଲିଯାଏ ନାହିଁ।' ନିଜର କାର୍ଯ୍ୟ ପାଇଁ କାହାକୁ କୈଫିୟତ ଦେବାକୁ ଚାହିଁ ନାହିଁ ସେ, ଅସହ୍ୟ ହୁଏ ସେହି କଠୋର ନିର୍ମମ ସତ୍ୟ। ଭୟ ହୁଏ ସମରେଶର ବ୍ୟକ୍ତିତ୍ୱକୁ।

ସୌଖୀନ ଚିତ୍ରଶିଳ୍ପୀ, ଲେଖକ ସମରେଶ ଶାସ୍ତ୍ରୀ ଏ ସହରର ଜଣେ ପରିଚିତ ସଂଭ୍ରାନ୍ତ ବ୍ୟକ୍ତି। ଓଡିଶା ବାହାରେ ବସବାସ କରୁଥିବା ଶିଳ୍ପପତି ଜେଜେବାପା, ବାପାଙ୍କ ଅଜସ୍ର ଅର୍ଥ ପ୍ରତି ଆଗ୍ରହୀ ନହୋଇ ସେ ଚାହିଁଥିଲା ଓଡିଶା ଭଳି ରାଜ୍ୟଟିର ଏହି ସହରରେ ଥିବା ସେମାନଙ୍କର 'ଗାର୍ଡେନ ହାଉସ୍' ନାମଧେୟ କ୍ଷୁଦ୍ର ଘରଟିରେ ବସବାସ କରିବାକୁ।

ଫାଲ୍‌ଗୁନର ଅପରାହ୍ନ। ଏକାନ୍ତତା ଭଲ ପାଉଥିବା ସମରେଶ ରଙ୍ଗ, ତୂଳୀ

ନେଇ ଇଢେଲ୍ ପାଖରେ ଠିଆ ହୋଇ କୌଣସି ଏକ ସ୍କେଚ୍ ଆଙ୍କିବାରେ ଧ୍ୟାନସ୍ଥ ହୋଇଥିଲା। ତ୍ରସ୍ତା ହରିଣୀଟିଏ ଭଳି ଝିଅଟି ନିଃଶବ୍ଦରେ ଫାଟକ ଖୋଲି ବଗିଚା ମଧ୍ୟକୁ ଦ୍ରୁତ ପଦକ୍ଷେପରେ ଧାଇଁ ଆସି ଥିଲା। ଅନ୍ୟ କେଉଁଆଡେ ନ ଚାହିଁ ଅଳ୍ପ ଦୂରରେ ଥିବା ଗହଳିଆ ଫୁଲଗଛ ମଧ୍ୟରେ ନିଜକୁ ଲୁଚାଇ ବସିଥିଲା ସେ।

ଝିଅଟି ପ୍ରତି ଦୃଷ୍ଟି ଫେରାଇ ଆଶ୍ଚର୍ଯ୍ୟରେ କିଛି ପଚାରିବାକୁ ଯାଇ ସେ ସ୍ତବ୍ଧ ହୋଇଗଲା। ଭୟାତୁର କଥାକୁହା ଚକ୍ଷୁଦ୍ୱୟରେ ଅସହାୟତାର ଭାବ। ଚିକ୍କଣ କଳା ଭ୍ରୁଲତା। ଚିତ୍ରପ୍ରତିମା ଭଳି ମନେ ହେଉଛି ସେ। ଅପରାହ୍ନ ଆକାଶରୁ ଝରି ପଡିଛି ଟେକାଏ ଖରା ଝିଅଟିର ମୁହଁରେ। ମନେ ହେଉଛି, ହୀରା ଖଣ୍ଡିଏ ପଡି ରହିଛି କି ସେହି ବୁଦା ପାଖରେ।

-ତୁମେ ?

ସମରେଶ ପ୍ରଶ୍ନ ଆରମ୍ଭ କରୁ କରୁ ଝିଅଟି କ'ଣ କହିବାକୁ ଯାଉଥିଲା, ଠିକ୍ ଏତିକିବେଳେ ସେପାଖରୁ କୋଳାହଳ, ଶିକାରକୁ ଅଡେଇ ନେବାର ଭଙ୍ଗୀରେ।

ସମରେଶ ଫେରିଆସେ, ତୁଳୀ ଧରି ଆଙ୍କିବାରେ ମନୋନିବେଶ କରେ।

''ସେ ଏଇଠି ଅଛି, ଆମେ ଦେଖିଛୁ, ଏ ଫାଟକ ପାଖରେ ଠିଆ ହୋଇଥିଲା। ଫାଟକ ଖୋଲି ଭିତରକୁ ପଶିଯିବାର ଆମେ ଦେଖିଛୁ।'' ସେମାନେ ଚିତ୍କାର କରୁଛନ୍ତି। ସାନ ସାନ ଅର୍ଦ୍ଧଉଲଗ୍ନ ପିଲା କେତୋଟି ବଡମାନଙ୍କ କଥାରେ ସମ୍ମତିସୂଚକ ମୁଣ୍ଡ ଟୁଙ୍ଗାରୁଛନ୍ତି।

ସମରେଶ ଫାଟକ ପାଖକୁ ଯାଇ ପଚାରିଲା, ''କାହାକୁ ଖୋଜି ଆସିଛ ? ମୁଁ ସମରେଶ ଶାସ୍ତ୍ରୀ। ଏ ଘରେ ମୁଁ ରହେ, ଏବେ ଏଠିକି କେହି ଆସି ନାହାନ୍ତି।''

କେହି ଆସିନାହାନ୍ତି ? ସମରେଶର ଦମ୍ଭୋକ୍ତି ଦେଖି ସେମାନେ ଶଂକିଗଲେ। ପିଲାମାନେ କିଛି ବୁଝି ନପାରି ଦୌଡିଦୌଡି ଖେଳିବା ପାଇଁ ପଳାଇଲେ। ଦେଖଣାହାରୀ ବାହାରିଲେ ନିଜ କାମରେ। ଅଥଚ ସନ୍ଦେହ ଦୃଷ୍ଟି ନେଇ ଠିଆ ହୋଇ ରହିଲେ ସେମାନେ ଦୁଇ ଜଣ।

ଜଣେ ପଇଁଚାଳିଶ ପଚାଶ ବର୍ଷ ପାଖାପାଖି ସ୍ତ୍ରୀଲୋକ, ପୁରୁଷଟି ମଧ୍ୟବୟସ୍କ।

''ବାବୁ, ମୁଁ ତା'ର ମାଉସୀ ହେବି; ରାଗରୁଷାରେ ଝିଅଟା ମୋର ଚାଲି

ଆସିଛି। ତାକୁ ଖୋଜିଦିଅ, ତୁମର ଧରମ ହବ। ତାକୁ ନ ନେଇ ମୁଁ ଚଣ୍ଡାଳୁଣୀ କିମିତି ଗାଁକୁ ଫେରିବି? ତା' ମାଆ ବୋପାକୁ ଏ ପୋଡା ମୁହଁ ଦେଖେଇ ପାରିବି କି?''

ସ୍ତ୍ରୀ ଲୋକଟିର ଆଖିରୁ ଲୁହ ଝରିବା ଦେଖି ହସି ଉଠିଲା ପୁରୁଷଟି। ତାଚ୍ଛଲ୍ୟର ହସ। ବିରକ୍ତି ପ୍ରକାଶ କରି କହିଲା, ''ଯା ପଳା ଏଠୁ, ଏ କିମ୍ଭୀର କାନ୍ଦଣା ଏ ଯାଗାରେ ଚଳିବନି। କହୁଚି, ଝିଅର ମାଉସୀ! ତୁ କୋଠାବାଲୀ, ଖାନିକି, ଏକଥା କିଏ ନଜାଣେ?''

''ହଁ ମୁଁ କୋଠାବାଲୀ, ଖାନିକି, କାହାପାଇଁ ରେ ଅଳପେଇଷ? କିଏ ମତେ ଏ ଦଶା ଦେଲା? ତୋ ବୋପା, ଭାଇଙ୍କି ଏକଥା ପଚାରେ, ଏଠି ଭଦରନୋକି ଦେଖେଇ ହଉଚୁ?''

ଅନ୍ୟ ଉପାୟ ନ ଦେଖି ସମରେଶ୍ କହିଲା, ''ତୁମେ ସବୁ ଯିବ ନା ମତେ ପୋଲିସ ଡାକିବାକୁ ହେବ?''

''ବାବୁ, ମୋ ଝିଆରୀକୁ ଇଏ ଶିଖେଇ ଗାଆଁରୁ ନେଇ ଆସିଛି। ଗରିବ ବାପା, ମାଆଙ୍କ ପାଖରେ ପେଟପୂରା ମୁଠାଏ ଖାଇବାକୁ, ଖଣ୍ଡେ ପିନ୍ଧିବାକୁ ପାଉ ନଥିବା ପିଲାଟାକୁ ପାଖରେ ରଖି ପାଠ ପଢେଇବ ବୋଲି କହିଲା। ସହରକୁ ଆଣି ଭାରିଜାର ପୋଇଲି କଲା। ଘର ଯାକର କାମ ସେଇ କରିବ, ଶେଷକୁ ରାତିରେ ତା' କୋମଳ କଳି ଦେହଟାକୁ ଭୋଗ କରିବା ପାଇଁ ଧମକ ଚମକ ଦେଲା। ଯା'କୁ ଡରି ରାତି ରାତି ଅନିଦ୍ରା, ଅଖିଆ, ଅପିଆ ରହିଛି ମୋ ଝିଆରୀ। ସେଦିନ ବଜାର ଆସିଥିଲା ସେ ଯା ଭାରିଜା ସାଙ୍ଗରେ। ମୁଁ ପରା ନେଇ ଆସିଲି ମୋ ପାଖକୁ।'' ସ୍ତ୍ରୀ ଲୋକଟି ବିଶ୍ୱାସର ସହ କହୁଥିଲା।

''ସମରେଶ ବାବୁ, ଏମାନେ ସବୁ ପ୍ରକାର କହିପାରନ୍ତି। ଅଭିନୟ ଦେଖୁଛନ୍ତି ତ? ମୋ ଘରୁ ଭୁଲେଇ ସତର ଅଠର ବର୍ଷର ଝିଅଟାକୁ ନେଇଗଲା ବ୍ୟବସାୟରେ ଲଗେଇବାକୁ, ଏ ବଜାତ୍ ସ୍ତ୍ରୀ ଲୋକକୁ ଜେଲ୍ ନ ଦିଆଇ ଛାଡିବି ନାହିଁ।''

''ଆପଣମାନେ ଯାହା ଇଚ୍ଛା, କରନ୍ତୁ। ଏଠି ବହୁତ ହେଇଗଲା। ଦୟାକରି ଚାଲି ଯାଆନ୍ତୁ।''

ସ୍ତ୍ରୀଲୋକଟିର ଚକ୍ଷୁ ରକ୍ତ ବର୍ଣ୍ଣ ଦେଖାଗଲା। କ୍ରୋଧ ଅପମାନରେ ଜଳିଉଠି

ସେ ଆଉଥରେ ଚିତ୍କାର କରି ଉଠିଲା, ''କ'ଣ କହିଲୁ ରେ ବାଡିପୋଡା, ମୁଁ ଖାନିକି ବ୍ୟବସାୟ କରୁଛି। ଆଉ ତୁ ସାଧୁ ମରଦ ତ ନିଜ ଝିଅ ବଅସର ପିଲାଟିର ଦେହଟାକୁ ଲୋଭେଇଲୁ କାହିଁକି? ତତେ ଧରମ ସହିବଟି? ପଚାର ବାବୁ, ଏ କୋଠାବାଲୀ ଯଦି ବ୍ୟବସାୟ ଖୋଲି ନ ବସି ଥାଆନ୍ତା, ଆପଣଙ୍କ ଘରର ମା' ଭଉଣୀଙ୍କ ଇଜ୍ଜତ ବଞ୍ଚନ୍ତା କିମିତି? ଏ ଦେହଲୋଭୀମାନେ ତାଙ୍କୁ ରାସ୍ତା ଚଲେଇ ଦିଅନ୍ତେ?''

ସମରେଶ ନୀରବ ହୋଇଗଲା। କ'ଣ କହୁଛି ସ୍ତ୍ରୀଲୋକଟି!

''ଠିକ୍ କହିଛ। ତୁମେ ମହୀୟସୀ, ସେବତୀ ମାଉସୀ।'' ତୃତୀୟ ବ୍ୟକ୍ତି, ଜଣେ ଯୁବକ ହସି ହସି ଆଗେଇ ଆସି ଉତ୍ତର ଦେଲା।

ତାକୁ ବିସ୍ମିତ ଭାବରେ ଚାହିଁ ରହିଲା ସମରେଶ। ପଚାରିଲା, ''ଆପଣ? ମୋ ସାଙ୍ଗରେ ଆପଣଙ୍କର କିଛି ଦରକାର ଅଛି?'' ଏସବୁ ବ୍ୟାପାରରେ ମୁଣ୍ଡ ପୂରାଉଥିବା ଦାଢୀ ବଢାଇ ପାଗଳ ଭଳି ଦେଖାଯାଉଥିବା ଅଳ୍ପବୟସ୍କ ଯୁବକଟିକୁ ଅସନ୍ତୁଷ୍ଟ ସ୍ୱରରେ ପଚାରିଲା ସମରେଶ୍।

''ଆଜ୍ଞା, ସେଇ ଝିଅଟିକୁ ମୁଁ ଖୁବ୍ ଖୋଜୁଛି। ଏଇ ଅଧଘଣ୍ଟାଏ ପୂର୍ବରୁ ପାଖ ପାର୍କରେ ସିମେଣ୍ଟ ବେଞ୍ଚିଟିରେ କ୍ଳାନ୍ତ ହୋଇ ବସି ରହିଥିଲା ସେ। ଅନେକ ପଚାରି ତା' ପାଖରୁ କିଛିକଥା ଜାଣି ପାରିଲି ନାହିଁ। ସେ ଉଠିଯାଇ ଏଇଯାଡେ ପଳାଇ ଆସିଲା। ଦେଖନ୍ତୁ, ଏ କାର୍ଡ। ମୁଁ ଜଣେ ସାମ୍ବାଦିକ।''

ସମରେଶକୁ କୌଣସି କଥା ନ କୁହାଇ ଦେଇ ସେ ପୁଣି କଥା ଆରମ୍ଭ କଲା, ''ଏଇ ଅଳ୍ପ ଦୂରରେ ବସି ଏ ଦୁହିଁଙ୍କ କଥା ମୁଁ ଶୁଣୁଥିଲି। ବିଚରା ଅସହାୟ ଦରିଦ୍ର ବାପା, ମା' କେତେ ଆଶା ନେଇ ବିଶ୍ୱାସରେ ପିତୃପ୍ରତିମ ପୁରୁଷଟି ସହ ଅଧାପାଠରୁ ଗାଁ କଲେଜରୁ ଝିଅଟିକୁ ଉଠାଇ ଆଣି ପଠାଇଦେଲେ ସହରକୁ। ଅଥଚ କ'ଣ ହେଲା ଦେଖନ୍ତୁ! ଏ ଘଟଣା ପରେ ଗାଁ ସାଇଭାଇଙ୍କ ଉପରେ କି ଭରସା କରିହେବ? ଆଉ ଏ କୋଠାବାଲୀ ସେବତୀ! ତାଙ୍କର ବୟାନ ଯଥାର୍ଥ। ପରୋକ୍ଷ ଭାବରେ ଏ ସମାଜର ସେ ମଙ୍ଗଳ କରୁଛନ୍ତି। ପ୍ରଲୁବ୍ଧ ପୁରୁଷମାନେ ରୂପଜୀବୀମାନଙ୍କ ପାଖକୁ ନ ଯାଉଥିଲେ, କ'ଣ ଯେ ହୁଅନ୍ତା?''

ସାମ୍ବାଦିକ ଯୁବକଟିର ଅନଧିକାର ଚର୍ଚ୍ଚାରେ ପୂର୍ଣ୍ଣଚ୍ଛେଦ ଆଣିବା ପାଇଁ ସମରେଶ୍

ପଚାରିଲା, ''ଏଡ୍‌ସର ନାଆଁ ଶୁଣିଛନ୍ତି ?''

''ହାଃ ହାଃ ସେଇକଥା ବିଚାର କଲେ ଆଉ ଏକ ଗଳ୍ପ ସୃଷ୍ଟି ହେବ।'' ଯୁବକଟି ବେପରୱା ଭାବରେ ହସୁଥାଏ ।

''ଆପଣଙ୍କର ମସଲା ଗଳ୍ପ ଦରକାର ତ ଅନ୍ୟଆଡେ ଯାଆନ୍ତୁ। ମୋର ମୂଲ୍ୟବାନ ସମୟ ନଷ୍ଟ କରନ୍ତୁ ନାହିଁ।'' ସମରେଶ୍ ରୀତିମତ ବିରକ୍ତ ହେଇଉଠିଲା ।

''ଟିକିଏ ଶୁଣନ୍ତୁ, ଆଜ୍ଞା। କଥା କ'ଣ କି ଆପଣଙ୍କୁ ମୋର କିଛି ପଚାରିବାର ନାହିଁ। ଏ ଦୁହେଁ ମୋତେ ସବୁ କହିସାରିଛନ୍ତି। ମୁଁ ସବୁ ଜାଣିଛି। ତଥାପି ସେ ଝିଅଠାରୁ ମୋର କିଛି ଶୁଣିବାର ଅଛି। ତା'ପରେ ଏ ସମ୍ବାଦଟି ପ୍ରେସ୍‌କୁ ଦେଇ ଦେବି।''

ସମରେଶ୍ ପଛକୁ ଫେରି ନୀରବରେ ସାମ୍ବାଦିକ ଜଣଙ୍କୁ କିଛି ସମୟ ଚାହିଁ ରହିଲା ।

ସମ୍ବାଦ ନାମରେ କଥାସବୁ ଚିତ୍ର ବିଚିତ୍ର କରି ପାଠକମାନଙ୍କୁ ବିଭ୍ରାନ୍ତ କରୁଛନ୍ତି ଏମାନେ। ଏହିଭଳି କିଛି ବ୍ୟକ୍ତିଙ୍କ ଦ୍ୱାରା ସମ୍ବାଦପତ୍ରରେ ପ୍ରକାଶ ପାଉଥିବା ବିଷୟ କାହାର କି ପ୍ରକାର କ୍ଷତି କରୁଛି, ସେ ଦିଗରେ ଆଦୌ ସଚେତନ ନୁହଁନ୍ତି ଏ ପ୍ରକାର ସାମ୍ବାଦିକମାନେ। ଶସ୍ତା ଜନପ୍ରିୟତା, ସମ୍ବାଦପତ୍ରର ପ୍ରସାର ବିଷୟ ଚିନ୍ତା କରୁଥିବା ସମ୍ପାଦକମାନେ ମଧ୍ୟ ଏମାନଙ୍କୁ ବେଶ୍ ପ୍ରଶ୍ରୟ ଦିଅନ୍ତି !

ସମରେଶ୍ ସେମାନଙ୍କୁ ବିଦାୟ ଦେଇ ଫେରିଆସିଲା ଝିଅଟି ପାଖକୁ। ଅସ୍ତ ସୂର୍ଯ୍ୟର ଆଭା ବଗିଚାଟିର ଫୁଲପତ୍ରକୁ ଅନ୍ୟ ଏକ ରଙ୍ଗରେ ଆଲୋକିତ କରିଛି। ସମରେଶ ସେହି ବୁଦା ପାଖକୁ ଯାଇ ଅଚିହ୍ନା ଝିଅଟିକୁ ଅତ୍ୟନ୍ତ ବିଶ୍ୱାସର ସହ କ୍ଷମା ମାଗିବା ସ୍ୱରରେ କହିଲା, ''ମୁଁ ଦୁଃଖିତ, ତୁମେ ଖୁବ୍ କଷ୍ଟ ପାଇଲ। ଏବେ ଭୟ କରିବାର କିଛି କାରଣ ନାହିଁ। ସେମାନେ ଯାଇ ସାରିଲେଣି। ଆସ, ଆସ୍ତେ-''

ଝିଅଟିର ହାତ ଧରି ଉଠାଇ ଆଣିବା ପରେ ତାକୁ ଅନୁସରଣ କରିବାକୁ ନିର୍ଦ୍ଦେଶ ଦେଲା ସେ ।

''ତୁମର ଚା' ଦରକାର ?''

ବଗିଚାର ଅନ୍ୟ ପାଖରେ ବୁଲା ବୁଲି କରୁଥିବା ସମରେଶର ପତ୍ନୀ ନିଶା ଏବେ କ୍ଲାନ୍ତ ହୋଇ ବସି ସିଗାରେଟ ଫୁଙ୍କୁଥିବା ସ୍ୱାମୀଙ୍କ ପାଖକୁ ଆସି ଚା' କରିବ କି ନାହିଁ ପଚାରୁଛି। ସମରେଶ ଏଣେ ତେଣେ ଚାହିଁ ଥରେ ନିଶାକୁ ଦେଖି ହସିଦେଲା, ଉତ୍ତର ଦେଇ ପାରିଲା ନାହିଁ।

ନିଶା କାନ୍‌ଭାସ୍‌ର ଛବିକୁ ଦେଖି କେତେ ମୁହୂର୍ତ୍ତ ହଜି ଯାଇ ଆଉ ଥରେ ଚକିତ ଦୃଷ୍ଟିରେ ଅନେଇ ଦେଇ କହେ, ''ଏ ତ ମୋ ପୋର୍ଟ୍ରେଟ୍‌।''

ବର୍ଷକ ତଳେ ଫୁଲଗଛ ଗହଳରେ ନିଜକୁ ଲୁଚାଇ ରଖିଥିବା ନିଶାର ସେହି ଉଦାସ ଅସହାୟ ମୁହଁଟି ସଯତ୍ନ 'ଟ୍ୟୁଲିପ୍‌' ମଧ୍ୟରେ ଆଙ୍କିଛନ୍ତି ସମରେଶ। ନିଶା ଅତ୍ୟନ୍ତ ଆଗ୍ରହରେ ଚାହିଁ ରହିଥିଲା ନିଜ ଛବିଟିକୁ। □□

ବିଷୁବ ଝଂକାର, ୧୯୯୪

# ପ୍ରୟାସ

''ମୋ ଫାଇଲ୍‌ଟା ? ଏଇଠି ଥିଲା ଏ ସେଲଫ୍‌ରେ ।''

କାଗଜ, ବହିପତ୍ର ଖୋଲା ହୋଇ ପଡିଛି । ବ୍ୟସ୍ତ, ବିବ୍ରତ ସ୍ୱରାଜ୍ । ରତ୍ନା ସନ୍ତ୍ରସ୍ତ । ସ୍ୱରାଜ୍‌ର କାଗଜପତ୍ର ସେ ସଜାଡି ରଖିବାକୁ ସାହସ କରେନାହିଁ । ସେ କ'ଣ ଜାଣେ ? ତା' ଶାଢ଼ି ଗହଣା ସେ ସାଇତି ରଖେ । ସ୍ୱରାଜ୍ ସାମନାରେ ନିଜକୁ ସଜେଇ ହସ ହସ ମୁହଁରେ ଦୁଇପଦ କଥା କହିବା ବ୍ୟତୀତ ଏ ଘରେ ତା'ର କାମ ନାହିଁ । ଅଫିସ ଫେରନ୍ତା ବାଟକୁ ଚାହିଁ ବସିଥିବ । ସନ୍ଧ୍ୟାରେ ସେମାନେ ସିନେମା ଯିବେ, ଘଣ୍ଟା ଘଣ୍ଟା ବସିବେ ସମୁଦ୍ରକୂଳରେ, କେବେ କେବେ ଅନ୍ୟ କିଛି । ସପ୍ତାହରେ ଦୁଇ, ତିନିଥର ହୋଟେଲ୍ ବା ସେପରି କିଛି ନିମନ୍ତ୍ରଣ ରହିଥାଏ ।

ରତ୍ନା ତଳକୁ ଗଲା । ଅନୁପମା ଅଫିସରୁ ଫେରି ଲୁଗା ବଦଳେଇବାକୁ ଯାଉଥିଲା । ସେଇଠି ଦୋଷୀ ଦୋଷୀ ଭାବ ନେଇ ଠିଆ ହେଲା ରତ୍ନା ।

''ଅପା, ତାଙ୍କ ଫାଇଲ୍ ମିଳୁନି ।''

''କି ଫାଇଲ୍ ? ପଚାରିଛୁ ?''

''ନା, ତା' ତ ଜାଣିନି ।''

''ଠିକ୍ ଅଛି, ମିଳିଯିବ । ଦେଖୁଛି ମୁଁ ।'' ରତ୍ନାର ଶାନ୍ତ, ସରଳ ମୁହଁକୁ

ଚାହିଁ ନିର୍ଭର ଉତ୍ତର ଦେଲା ଅନୁପମା।

ଗାଧୁଆ ଘରୁ ଆସି ପାଖ ଚଉକିରେ କ୍ଳାନ୍ତହୋଇ ବସି ରହିଲା ସେ।

''ଅପା, ଚା' କରିବେ ?'' ରୋଷେଇ କରିବା ଲୋକଟି ପଚାରୁଛି।

''ଏଁ ଚା'?'' ଚମକିବା ଭଳି ଉଠି ପଡ଼ିଲା ଅନୁପମା। ଏବେ କିଛି କଥା କହିବାର ବାଟ ପାଇଗଲା ରତ୍ନା। ''ତାଙ୍କୁ କହିଲି, ଚା' ଆଣେ। ମନାକଲେ। କହିଲେ, ଆଜି ଅଫିସ୍‌ରୁ ଆସିଲେ।''

ସ୍ୱରାଜ୍ ଏ ଯାଏ ଚା' ଖାଇନି ? ଫେରିବା ପରେ ସେଇଟା ପ୍ରଥମେ ତା'ର ଦରକାର।

''ମୁଁ ଅଫିସ୍‌ରୁ ଫେରିବା ପୂର୍ବରୁ ତୁମେ ଆସି ପାରନ୍ତ ନାହିଁ?''

''କାହିଁକି କୁହ ତ ?'' ଆଶ୍ଚର୍ଯ୍ୟରେ ପଚାରିଲା ଅନୁପମା।

''ଅତି ସହଜ କଥା। ତୁମ ହାତରୁ କପେ ଚା' ଖାଇବାର ଇଚ୍ଛା।''

''ପିଲାଳିଆମି।''

''ତୁମେ ବୁଝିବନି।''

କିଛିଦିନ ତଳର କଥା ମନେପକାଉଛି ଅନୁପମା।

ଅନେକଥର ଭାବିଛି, ରତ୍ନାକୁ ଡାକି ଶିଖେଇଛି, ସେ ରାଜି ହୁଏନି। ଅଭିଯୋଗ କରେ, ''ମୋ ହାତରୁ ଚା' ଖାଇଲେ ତାଙ୍କର ଦିନସାରା ମୁଡ୍ ଖରାପ ହେଇଯାଉଛି।''

''ଅନୁ ମା' ଆସିଲାଣି କି ?''

''ହଁ ମା', ଚା' କରୁଛି।''

''ଆଜି ତୋର ଭାରୀ ଡେରି ହେଲା ? ଆମେ କେହି ଚା' ଖାଇନୁ।'' ସୁଷମା ଏପାଖରୁ କହୁଛନ୍ତି।

ଅନୁପମା ଚା' ଭିଜେଇ ସାରି ତା' ହାତ ଦୁଇଟିକୁ ଚାହିଁଲା। ''ତୁ ପାନ ଖଣ୍ଡେ ଭାଙ୍ଗିଦେଲେ ମୋତେ ଭଲ ଲାଗେ। ସମସ୍ତଙ୍କ ହାତରେ ସବୁ କାମ ଠିକ୍ ହୁଏନି। ଆ' ଏଇଠି ବ'ଥ। କ'ଣ ଟିକେ ଖା ମା', ଭାରୀ ଶୁଖିଲାଟା ଦିଶୁଛୁ।''

ଅନୁପମା ଶାଶୁଙ୍କୁ ଚାହିଁ ସହଜ ଭାବରେ ହସେ। ଲୁଗା କାନିରେ ତା' ମୁହଁ ପୋଛି ଦେଇ ସେ କହନ୍ତି, ''ଅଫିସରେ କାମ ଟିକେ ବେଶୀ ପଡ଼ିଯାଉଛି କି ?''

"ହଁ, କରିବାକୁ ହବ। ପ୍ରମୋଶନ୍ ହେବାପରେ ଦାୟିତ୍ୱ ବେଶୀ।"

ସ୍ୱରାଜ୍ ସୁଷମାଙ୍କ ପ୍ଲେଟରୁ ଖଣ୍ଡେ ବିସ୍କୁଟ ଉଠେଇ ନେଇ କହିଲା, "ଆନି, ମୋ ପରସନାଲ୍ ଫାଇଲ୍‌ଟା ପାଉନି। ଟିକେ ଖୋଜି ଦବ। ଆଜି ମିଳିବା ନିହାତି ଦରକାର।"

ଅନୁପମା ଉଠିଯାଉଥିଲା। ସ୍ୱରାଜ୍ ପୁଣିଥରେ କହିଲା, "ମୋର କିଛି ପିନ୍ଧିବାକୁ ନାହିଁ ଏବେ। ବୁଝିପାରୁନି ଆଜି ପାର୍ଟିରେ କ'ଣ ପିନ୍ଧିବି? ଟିକେ ଦେଖିବ?"

ସକାଳୁ ଖୁବ୍ ବେଶୀ କଥା କହୁଛି ସ୍ୱରାଜ୍। ରତ୍ନା କହିଲା, "ଅପା ମ, ଦୁଇଟା ସିଲ୍କଶାଢ଼ି ରଖି ଆସିଛି ବାହାରେ। ମୋ ପାଇଁ ବାଛି ଦବ।"

ସୁଷମାଙ୍କୁ ପାନ ଦୁଇଖଣ୍ଡ ବଢ଼ାଇ ଦେଇ ପାହାଚରେ ଉପରକୁ ଉଠିଗଲା ଅନୁପମା।

ଅନେକ ଦିନ ହେଲା ସ୍ୱରାଜ୍‌ର ଶୋଇବା ଘରକୁ ସେ ଆସିନି। ରତ୍ନାର ଟିକେ ବି ବୁଦ୍ଧି ନାହିଁ। ନିଜେ ବିଛଣା ନ ସଜାଡ଼ିଲେ ବି ନୀଳାମା' ହାତରେ କରାଇ ପାରନ୍ତା। ନା କାମ କରିବ କି କରେଇ ପାରିବ! ବିଛଣାଟା ସଜାଡ଼ିଦେଲା ଅନୁପମା।

ସେମାନେ ସମସ୍ତେ ତଳେ। ଶାଶୁ ରତ୍ନାକୁ ଡାକି ବଗିଚାକୁ ବୁଲିଗଲେ। ସ୍ୱରାଜ୍‌ର ପାଟି ଶୁଣା ଯାଉଛି। ଡ୍ରାଇଭର୍‌କୁ ଗାଡ଼ିଟା ଭଲଭାବେ ପୋଛାପୋଛି କରିବାକୁ ନିର୍ଦ୍ଦେଶ ଦେଉଛି ସେ।

ଅନୁପମା ସୁଇଚ ଟିପି ଲାଇଟ୍ ଜଳାଇଲା, ସ୍ୱରାଜ୍‌ର ଟେବୁଲ୍, ଫଟୋ ଫ୍ରେମ୍‌ର ଫଟୋ, ଫୁଲଦାନୀର ଫୁଲ, ୱାର୍ଡରୋବ୍‌ର ଲୁଗାପଟା ସଜାଡ଼ିବାରେ ଲାଗିଲା।

"ଏ ଘରର ଚେହେରା ବଦଳିଗଲା! ୟୁ ଆର ୟୁନିକ୍," ସ୍ୱରାଜ୍‌ର ସପ୍ରଶଂସ ଦୃଷ୍ଟି।

ସାର୍ଟ, ପ୍ୟାଣ୍ଟ, କୋର୍ଟ, ଟାଇ ଉଠାଇ ନେଇ ଦେଖି ଦେଖି ଖୁସିରେ କହି ପକାଇଲା, "କେତେ ଦିନ ହେବ ଏ ସୁଟ୍ ମୁଁ ପିନ୍ଧି ନଥିଲି, ତୁମର ଚଏସ୍ ଖୁବ୍ ଭଲ।"

ନିର୍ଭରଶୀଳ ଲୋକମାନେ ଏମିତି କଥା କହି ଜାଣନ୍ତି। ଅନୁପମା ନିଜକୁ ଉତ୍ତର ଦେଲା ନୀରବରେ ଏବଂ ଖୁବ୍ ଶୀଘ୍ର ସେ ଘରୁ ବାହାରି ଯିବାକୁ ବସିଲା।

''ତୁମକୁ କିଛି କହିବାର ଥିଲା, ଆନି।'' ଅନୁପମାର ରାସ୍ତା ଅବରୋଧ କରି ଠିଆ ହୋଇଛି ସ୍ୱରାଜ୍, ଧୀରେ ହାତଟି ନିଜ ହାତରେ ନେଇ ଚାପିଧରିଛି ସେ।

ଅନୁପମା ଏମିତି ଦୁର୍ବଳ ନୁହେଁ ଯେ ଏ ସ୍ପର୍ଶରେ ତରଳି ଯିବ, ଢଳିପଡ଼ିବ ସ୍ୱରାଜ୍‌ର ଛାତିରେ! ଯାହା କିଛି ଘଟିଛି, ସେଥିରେ ଭାବପ୍ରବଣତାର ସ୍ଥାନ କାହିଁ? ସ୍ୱରାଜ ଜାଣେ ପଛକୁ ଆଦୌ ଫେରିଯାଇ ହବନାହିଁ, ଅଥଚ ଅନୁପମା ହାତ ଛଡ଼ାଇ ନେଇ ପାରୁନାହିଁ। ସ୍ୱରାଜ୍‌କୁ ଦୃଢ଼ଭାବରେ ନାହିଁ କହିବାକୁ ଇଚ୍ଛା କରୁଥିବା କଥାସବୁ ସେ ଭୁଲି ଯାଉଛି କାହିଁକି? ଏଇ ମୁହୂର୍ତ୍ତରେ ଆଉ ଟିକିଏ ସ୍ୱରାଜ୍‌କୁ ଦେଖିବାକୁ ଏ କି ଇଚ୍ଛା ତା'ର? ଅନ୍ୟାୟ? ନ୍ୟାୟ, ଅନ୍ୟାୟ କ'ଣ ସେ ଦୁହିଁଙ୍କ ମଧ୍ୟରେ? ଧୀରେ ଅନୁପମାକୁ ଛାତିରେ ଆଉଜେଇ ନେଲା ସ୍ୱରାଜ୍। ''ଆନି, ମୁଁ ଭୁଲ୍ କରିଛି, ମୋତେ ତୁମର କରିନିଅ। ମୁଁ ତୁମକୁ ଚାହେଁ।''

''ରାଜ୍।'' ଅନୁପମାର ମନୋବଳ ଭାଙ୍ଗିଯାଉଛି। ସ୍ୱରାଜ୍‌ର ବାହୁ ବନ୍ଧନରୁ ଦୂରେଇ ଆସି ସେ କହିଲା, ''ଟେବୁଲ ପାଖ ସାଇଡ୍‌ବୋର୍ଡରେ ତୁମ ଫାଇଲ୍‌ଟା ରଖାହୋଇଛି। ମୁଁ ଆସେ।''

ତରତର ହୋଇ ପାହାଚରେ ଓହ୍ଲାଇଗଲା ଅନୁପମା। ସ୍ୱରାଜ୍‌କୁ ସ୍ୱେଚ୍ଛାରେ ସେ ଛାଡ଼ି ଦେଇଛି। ତେବେ ଭୁଲ ତ କରିନି? କୋଉଠି କ'ଣ ହଜିଯାଇଥିଲା? କାହିଁକି ଏ ଅସ୍ଥିରତା ତା' ମନରେ ତେବେ? ସ୍ୱରାଜ୍‌କୁ ଏମିତି ସେ ତ ଚାହିଁନି? ଅନୁପମା ଶୋଇବା ଘର କବାଟ ଭିତରୁ ବନ୍ଦ କରି ବିଛଣାରେ ଗଡ଼ିପଡ଼ିଲା।

ହଠାତ୍ ଯେପରି ଅନୁପମା ନିଜକୁ ଜାଣି ପାରୁନାହିଁ। ସକାଳେ ଘରକାମ ବୁଝି ପୁଅ ଝିଅଙ୍କୁ ସ୍କୁଲ ପଠେଇ ଅଫିସରେ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ବୁଝିଥିବା ଅନୁପମା ସେ ନିଜେ ତ? କ'ଣ ସେ ଚାହେଁ? କାହିଁକି ଏ ଆସକ୍ତି?

ସ୍ୱରାଜ୍‌ର ଟିକିଏ ଅସୁବିଧା ତା'ର ଅସହ୍ୟ। ତା' ମନ ପସନ୍ଦର ତା'

କରିବା, ପାର୍ଟିରେ ପିନ୍ଧିଯିବା ପାଇଁ ସାର୍ଟ, ପ୍ୟାଣ୍ଟ କୋର୍ଟ, ଟାଇ ସଜାଇ ରଖିବା, ସେ ନ ପାଉଥିବା ଫାଇଲଟି ଖୋଜି ରଖିବା- ଏମିତି ସମୟର ଅନୁପମା ହୁଏତ ଆଉ ଜଣେ। ଅବାଧ ମନ!

ଆତ୍ମାର ବନ୍ଧନକୁ ଇଚ୍ଛାକରି ଛିନ୍ନ କରି ହୁଏ ନାହିଁ।

ଅନୁପମା ମନେ ମନେ ବାରମ୍ବାର ଉଚ୍ଚାରଣ କଲା, ‘‘ହଁ, ରାଜକୁ ମୁଁ ଭଲ ପାଏ। ସେଇଥିପାଇଁ ତ ତା’ ଭଲ ମନ୍ଦ ବୁଝୁଛି ଏ’ ଯାଏ। ସେ ଚାହୁଁଥିବା ଝିଅକୁ ତା’ ସହ ବିବାହ କରାଇବା କ’ଣ ଭୁଲ୍? ଭୁଲ୍ ନୁହେଁ? ଅଧିକାର ଏତେ ସହଜରେ କିଏ ଛାଡିଦିଏ?’’

କିନ୍ତୁ କ’ଣ ଆଉ ବାକିଥିଲା? ଅନୁପମାର ପାଖରେ ଥାଇ ମଧ୍ୟ ନିଜକୁ ଦୂରେଇ ନେଇଥିଲା ସ୍ୱରାଜ୍।

ଯେଉଁଦିନ ପ୍ରଥମ ସେ ରତ୍ନା ସହ ସ୍ୱରାଜ୍‌ର ସଂପର୍କ ଜାଣିଲା, ସେଦିନ ଆଉ କିଛି କରିବାର ନଥିଲା। ତଥାପି ସେମାନେ ଏକା ବିଛଣାରେ ଶୋଇଥିଲେ।

‘‘ଆନି, ତୁମେ ଭାବୁଥିବ ମୁଁ ଆବ୍‌ନରମାଲ୍।’’ ଏକଥାରେ ଉତ୍ତର ଦେଇନାହିଁ ଅନୁପମା। ତଥାପି ସେ ପଚାରିଲା, ‘‘ତୁମେ ବିବାହିତ, ସେ ଜାଣେ ତ?’’

‘‘ହଁ ଜାଣେ। ଯା ବି ଜାଣେ ଅନୁପମା ଭଳି ଅନିନ୍ଦ୍ୟା ସୁନ୍ଦରୀ, ବୁଦ୍ଧିମତୀ, ସୁନିପୁଣା ଏ ସଂସାରରେ ଦୁର୍ଲଭ।’’

‘‘ଏବେ ଏସବୁ କହିବାର ଆବଶ୍ୟକତା ନାହିଁ।’’

‘‘କିନ୍ତୁ ଯାହା କହୁଛି ମୋ ଅନ୍ତରର କଥା। ସତ୍ୟକୁ ଅବମାନନା କରାଯାଇ ପାରେନା। ମୋତେ କ୍ଷମା କର, ଆନି। ମୁଁ ମୋ ଅକ୍ତିୟାରରେ ନାହିଁ।’’

ଅର୍ଦ୍ଧରାତିର ସଂକେତ ଜଣାଇ କିଛି ଦୂରରେ ଯାଉଥିବା ଦ୍ରୁତଗାମୀ ଟ୍ରେନ୍‌ଟିର ଶବ୍ଦରେ ଅନୁପମାର ଚିନ୍ତା ବିକ୍ଷିପ୍ତ ହେଲା।

କେବେ କେବେ ସାନ ପିଲାଟିଏ ଅଳି କରିବା ଭଳି ସ୍ୱରାଜ କହେ, ‘‘ଅଫିସରୁ ଫେରି ଦେଖେ ତୁମେ ଆସିନ, ତୁମର ପୁଣି ଏତେ କାମ? ଭାରୀ ଏକା ଲାଗେ। ପିଲାମାନେ ନୀଳାମା’ ସଙ୍ଗେ ପାର୍କ ଯାଇ ଖେଳୁଥାନ୍ତି। ମା’ ତା’ କୋଠରୀରେ ଶୋଇଥାଏ କି ପୁରାଣ ପଢୁଥାଏ। ବଡ ବ୍ୟସ୍ତ ଲାଗେ।’’

‘‘ଘର କାମ କରିବାରେ ମୋର ବି ବେଶ୍ ଆନନ୍ଦ, କହିବ ଯଦି ଏ ଚାକିରିଟା ଛାଡି ଦେବି। ଆମର ଟଙ୍କାର ଆବଶ୍ୟକତା ଏତେ ବେଶୀ ନୁହେଁ।

ତେବେ ଡ୍ରାଇଭର, ମାଳି, ରୋଷେୟା ରଖିବାର ମଧ୍ୟ ଆବଶ୍ୟକତା କ'ଣ ?''

''ଅଛି। ବହୁପୂର୍ବରୁ ଏ ଘରେ ଏମାନେ ରହି ଆସିଛନ୍ତି। ଆମେ ଦରିଦ୍ର ନୁହଁ ସତ, କିନ୍ତୁ ଏ ପରିବାରର ଆଭିଜାତ୍ୟ ରକ୍ଷା କରିବା ପାଇଁ କେବଳ ମୋ ଅର୍ଜିତ ଅର୍ଥ ଯଥେଷ୍ଟ ନୁହଁ, ଆଉ କେବେ ଏ ଦୁର୍ବୁଦ୍ଧି କରିବନି, ଆନି।''

କିଛିଦିନ ପରେ ସେହି ଏକା କଥା- ''ମୁଁ ବ୍ରେକ୍‌ଫାଷ୍ଟ ଖାଇବାବେଳେ ତୁମେ ଉଠିଯାଅ କାହିଁକି ? ଧେତ୍, ଝିଅମାନେ ଏତେ ବେଶୀ ବ୍ରିଲିୟାଣ୍ଟ୍ ହେବା ଖୁବ୍ ଅସୁବିଧା।''

''ମାନେ ?''

''ଦେଖ, ଅନେକ ସମୟରେ ମୁଁ ଖୁବ୍ ଏକା। ସବୁଦିନ ମୁଁ ଭରତ ହାତରେ ଚା' ଖାଉଥିବି, ତୁମେ କ'ଣ ବୁଝନି ମୋତେ ଏସବୁ ଆଦୌ ଭଲ ଲାଗେନା। 'ଏଇଥିପାଇଁ କ'ଣ ମୁଁ ବାହା ହେଇଥିଲି ?''

ଦୁଇଜଣଙ୍କର ଅଫିସ ବିଳମ୍ବ ହୋଇ ଯାଇଥିଲା। ଏ ସଂପର୍କରେ କିଛି କହି ପାରିଲା ନାହିଁ ଅନୁପମା। କିନ୍ତୁ ମନେ ମନେ ଖୁବ୍ ଅସନ୍ତୁଷ୍ଟ ହୋଇ ସେ ଅଫିସ୍ ଗଲା।

ଅରବିନ୍ଦ ଇଣ୍ଡଷ୍ଟ୍ରିଜ୍ ତାକୁ ହେଡ୍ ଅଫିସ ବମ୍ବେକୁ ପଠାଇବାକୁ ଚାହିଁଥିଲା। ତା' ସେ ବନ୍ଦ କଲା।

''ଜାଣିଛ ? ମୋତେ ପ୍ରମୋସନ୍‌ରେ ହେଡ୍‌ଅଫିସ ବମ୍ବେକୁ ପଠାଇବାକୁ ଚାହିଁଥିଲେ ସେମାନେ। ଅଥଚ ମୁଁ ରାଜିହେଲିନି। ମୋ ପାଇଁ ଏଠି ସେଇ ପ୍ରମୋଶନ୍ ପୋଷ୍ଟ୍ କ୍ରିଏଟ୍ ହେଲା !''

''ଦେଖ ଆନି, ଆଉ କେବେ ଚାକିରି ଛାଡିବା କଥା କୁହ ତ ମୁଁ ଖୁବ୍ ମନ ଖରାପ କରିବି।''

ଅଫିସରେ ସେ ଯାହା ଚାହେଁ ତା' ହେବ। ତା' ବୁଦ୍ଧିରେ ଅଫିସ ପରିଚାଳିତ, ଘର ବି। ସେମାନେ ସମସ୍ତେ ତାକୁ ହିଁ ଖୋଜନ୍ତି। ସୁଷମା, ସ୍ୱରାଜ୍, ପିଲାମାନେ, ଭରତ, ନୀଳାମା। ସବୁ ସଂଭାଳିବାରେ କଷ୍ଟ ହେଲେ ବି ସେ ଖୁସିଥାଏ। ଏତେ ବେଶୀ ବାହାରର ବ୍ୟସ୍ତତା ସତ୍ତ୍ୱେ ଘର ସଂସାରକୁ ସୁନ୍ଦର ଭାବରେ ଚଳାଇ ପାରିବାର ଦକ୍ଷତା ତା'ର ଅସୀମ।

ଶାଶୁ କହନ୍ତି। ସ୍ୱରାଜ ବି ବନ୍ଧୁମାନଙ୍କ ପାଖରେ ଗର୍ବର ସହ ଘୋଷଣା

କରେ-

''ମୋର ବୁଦ୍ଧିମତୀ ପତ୍ନୀ ଭାତ ଡାଲି ରାନ୍ଧୁ, ପତିସେବା କରୁ, ତା' ମୁଁ ଚାହେଁନା।''

ସ୍ୱରାଜ୍‌କୁ ସୁଖୀ କରିବା ପାଇଁ କେତେ ବିନିଦ୍ର ପ୍ରହର ବିତିଯାଇଛି ତା'ର ଚିନ୍ତାକରି। ଅଥଚ ସବୁ ବ୍ୟର୍ଥ! ନିଜ ଚାକିରିରେ ନିଷ୍ଠାପର ହେବାକୁ ହେଲେ ଦାମ୍ପତ୍ୟଜୀବନର କିଛି ମଧୁରତମ ମୁହୂର୍ତ୍ତକୁ ମଧ ବାଦ୍ ଦେବାକୁ ହେବ, ଏ ବିଷୟ ବୁଝୁଥିଲେ ବି ଅବୁଝା ଶିଶୁଟି ଭଳି ବାରମ୍ବାର ଅଳି କରେ ସ୍ୱରାଜ, ''ବସ, ଏତେ ବ୍ୟସ୍ତ କାହିଁକି ଯିବାକୁ? ଆଜି ଗାଡି ନିଅନା, ମୁଁ ତୁମକୁ ଅଫିସରେ ଛାଡିଦେବି। ଗାଲାକ୍ସିରେ ଲଞ୍ଚ୍ ଖାଇବା ଆଜି।''

ଅନୁପମା ଗମ୍ଭୀର ହୋଇ ବସିରହିଲା ସ୍ୱରାଜ ସାମନାରେ। ପର ମୁହୂର୍ତ୍ତରେ ବ୍ୟସ୍ତ ବିବ୍ରତ ହୋଇ କହି ପକାଇଲା, ''ରାଜ୍, ପ୍ରାକ୍ଟିକାଲ ହୁଅ। ଆଜି ଦୁଇ ଦୁଇଟା ମିଟିଂ। ଏବେ ସାଢେ ଆଠଟାରେ ପୁଣି ଏଗାରଟାରେ। ସାଢେ ଗୋଟାଏରେ ଲଞ୍ଚ୍ ସେହି ଗାଲାକ୍ସିରେ ସେମାନଙ୍କ ସହ। ବାହାରୁ ଗେଷ୍ଟ୍ ଆସିଛନ୍ତି ପାଞ୍ଚଜଣ। ଭରତ, ସାର୍‌ଙ୍କୁ ଚା' ଦିଅ। ମା' ମୁଁ ଆସୁଛି।''

ଏତେ କଥା ଏକାଠି କହି ଶୀଘ୍ର ବାହାରିଗଲା ଅନୁପମା। ସ୍ୱରାଜ୍‌ର କଥା ଶୁଣିବାକୁ ତା'ର ସମୟ ନାହିଁ। କୋଉଦିନ ମିଟିଂ ତ କେବେ ଅଫିସ୍‌ରେ, ଅଫିସ୍ ବାହାରେ ପ୍ରବଳ ବ୍ୟସ୍ତତା।

ଅଥଚ୍ ସମୟ ସଂଚି ଘରେ ପହଞ୍ଚିଲେ ସ୍ୱରାଜ୍ ଫେରି ନଥାଏ। ହୁଏତ ଦିନେ ଦିନେ ସେ ବି ତ ଖୁବ୍ ବ୍ୟସ୍ତ ରହିଯାଏ ତା' କାମରେ। ଅନୁପମା ଅଭିଯୋଗ କରେ ନାହିଁ। ପୁଅ ଝିଅଙ୍କୁ ପଢାଇବା, ତାଙ୍କ ସହ ଖେଳିବା ପୁଣି ବର୍ଷିୟସୀ ସୁଷମାଙ୍କ ପାଖରୁ ସ୍ନେହପୂର୍ଣ୍ଣ କଥା ଦୁଇପଦ ଶୁଣିବାରେ ସ୍ୱରାଜ୍‌କୁ ଅପେକ୍ଷା କରିବାର ସମୟ ବିତିଯାଏ। ସ୍ୱରାଜ ତାକୁ ଉତ୍ସାହିତ କରିଛି, ''ଏ ଯୋଉ ସିଡି ଲମ୍ବି ଯାଇଛି ଉପରକୁ, ସ୍ୱଚ୍ଛନ୍ଦରେ ଚଢିଯାଅ। ଜାଣେନି, ତୁମ ପାଇଁ ବାହାରେ ମୁଁ କେତେ ଗର୍ବ ଅନୁଭବ କରେ।''

''ରାଜ୍, ତୁମେ ସବୁ କହିବ, ପୁଣି ସବୁ ଚାହିଁବ। ସବୁ କିପରି ସଂଭବପର ହେବ? ମୋର ତେବେ ଭୁଲ କୋଉଠି ରହିଲା?''

''ଭୁଲ ନୁହେଁ, ବୁଦ୍ଧିହୀନତା।''

ଅନୁପମାର ଅନ୍ତରଭିତରୁ ଅନୁତାପର ସ୍ୱର-

ତୋ ସଂସାର ଠିକ୍ ଚାଲୁଛି ଏ ବିଷୟ ବାହାରୁ ନିଜେ ଭାବି ଦେଲେ ଯଥେଷ୍ଟ ନୁହଁ। ଅର୍ଥ, ପ୍ରତିପତ୍ତି, ସମ୍ମାନ ପାଇଁ ସେହି ପାହାଚରେ ଉଠିଯିବା ବେଳେ ସ୍ୱରାଜ ପୂର୍ବଭଳି ତୋତେ ଖୋଜୁଛି କି ନାହିଁ, ସକାଳ ଚା', ବ୍ରେକ୍‌ଫାଷ୍ଟ ଟେବୁଲ୍, ଅଳସ ସନ୍ଧ୍ୟା ଏପରିକି ଅର୍ଦ୍ଧରାତ୍ରିରେ ନିଦ୍ରାରେ ମଧ୍ୟ, କେବେ ଭାବି ଦେଖିଛୁ ?

ତା' ଅଫିସ୍‌ର ଛୁଟୀଦିନ, ସହର ବାହାରକୁ କାମରେ ଯିବାବେଳେ କାହିଁକି ଆଉ ତୋତେ ଖୋଜେ ନାହିଁ ସ୍ୱରାଜ୍ ?

ସ୍ୱାମୀର ସମସ୍ତ ରୁଚି ଅନୁଯାୟୀ ସବୁ ବ୍ୟବସ୍ଥା କରୁଥିଲେ ବି ତୋତେ ସେ ଯେ ଅବହେଳା କରିଚାଲିଛି ଏ କଥା କେବେ ଭାବିଛୁ ?

ଏବେ ଅନ୍ଧାର ଘର ଭିତରେ ଏକାକିନୀ ଅନୁପମା। ସ୍ୱରାଜ ତାକୁ ପାଗଳ କରି ଦେବ।

ରତ୍ନା କିଏ ? କେବେ ତା' ସହ ସ୍ୱରାଜର ଦେଖା ? ତା' ବୁଝିବାକୁ ଚେଷ୍ଟା କରିବାବେଳେ ବେଶ୍ ବିଳମ୍ବ ହୋଇ ଯାଇଥିଲା।

ସ୍ୱରାଜ ଅନୁତପ୍ତ କଣ୍ଠରେ କହିଛି, ''କୌଣସି ଦିନ ଏମିତି ହେବ ତା' ମୁଁ ଭାବି ନଥିଲି। ରତ୍ନା ପାଖରୁ କାହିଁକି ମୁଁ ନିଜକୁ ମୁକ୍ତ କରି ପାରୁନି ତା' ମୋ ଚିନ୍ତାର ବାହାରେ।''

ମାତ୍ର ଦିନଟିଏ ସ୍ୱରାଜକୁ ବାପାଙ୍କ ଶ୍ରାଦ୍ଧ ପାଇଁ ଘରେ ରହିବାକୁ ହୋଇଥିଲା। ପରଦିନ ଖୁବ୍ ସକାଳୁ ବିଛଣାରୁ ଉଠି ନିଜେ ଗାଡି ନେଇ ବାହାରି ଯାଇଥିଲା ସେ ରତ୍ନା ପାଖକୁ।

ସକାଳର ଚା' ଆଣି ଅନୁପମା ଦେଖେ ଯେ ସ୍ୱରାଜ ବିଛଣାରେ ନାହିଁ। ସେଦିନ ଅଫିସ ଛୁଟୀ। ଏମିତି ଦିନରେ ବିଳମ୍ବରେ ବିଛଣା ଛାଡିବାକୁ ଚାହୁଁଥିବା ସ୍ୱରାଜ୍ କେତେବେଳେ ଉଠି ଗାଡି ଧରି ବାହାରି ଯାଇଛି !

ସାରାଦିନ ପ୍ରତୀକ୍ଷା ଅନୁପମାର ! ବିଳମ୍ବିତ ରାତ୍ରିରେ ଫେରି ସ୍ୱୀକାର କରିଛି ସ୍ୱରାଜ, ''ତୁମ ପାଖରେ ଗୋପନ କରିବାର କିଛି ନାହିଁ, ମୁଁ ରତ୍ନାକୁ ଭଲ ପାଇଛି। ନିଜକୁ ଏ ଆସକ୍ତିରୁ ଦୂରରେ ରଖିବାର ଚେଷ୍ଟାକରି ମୁଁ ହାରିଯାଉଛି, ଆନି। ମୋତେ କ୍ଷମା କର।''

''କ୍ଷମା ଦେବା ନଦେବାର ପ୍ରଶ୍ନ ନାହିଁ। ତୁମକୁ ସୁଖୀ କରାଇବା ମୋର କର୍ତ୍ତବ୍ୟ। ତେଣୁ ମୁଁ ଭାବୁଛି...'' ଅନୁପମା ନୀରବରେ ଚିନ୍ତା କରୁଥିଲା।

''କ'ଣ ଭାବୁଛ ? ଯାହା କହିବ ମୁଁ ନିଶ୍ଚୟ ମାନିନେବି।''

''ନିଜ ଉପରେ ନିଜର କର୍ତ୍ତୃତ୍ୱ ହିଁ ରହିବା କଥା। ତା' ତୁମେ କରି ପାରିନ। ଶୁଣ, ତୁମେ ରତ୍ନାକୁ ବିବାହ କର।''

କିଛିଟା ଅବିଶ୍ୱାସ ଓ ଆଶ୍ଚର୍ଯ୍ୟ ଭାବରେ ତାକୁ ଚାହିଁ ରହିଲା ସ୍ୱରାଜ୍।

''ଖୁବ୍ ଶୀଘ୍ର ଆମେ ପରସ୍ପରକୁ ଆଇନ୍‌ର ଆଶ୍ରୟ ନେଇ ମୁକ୍ତିଦେବା।''

ସ୍ୱରାଜର କହିବାର କିଛି ନଥିଲା। ସମ୍ଭବତଃ ରତ୍ନାର ପୃଥିବୀରେ ସେ ହଜିଯାଇଥିଲା। ଅନୁପମାର ନିର୍ଦ୍ଦେଶରେ ସେ କାର୍ଯ୍ୟ କରୁଥିଲା।

ୟାଡକୁ ନିଜକୁ ଅତ୍ୟନ୍ତ ଆକର୍ଷଣୀୟ କରି ସଜାଉଥିଲା ଅନୁପମା। ସେମାନେ ପରସ୍ପରକୁ ପରିତ୍ୟାଗ କରିବା ନିମନ୍ତେ କୋର୍ଟ୍‌କୁ ଆବେଦନ କରିଥିଲେ। ସବୁ କାର୍ଯ୍ୟ ସହଜ ଭାବରେ ହେଇଯାଉ, ତାହାହିଁ ଚାହିଁଥିଲା ଅନୁପମା।

ପ୍ରତିଜ୍ଞା କରିବା ଭଳି ଘର, ବାହାର, ଅଫିସ ସବୁଠାରେ ସେ ହସ ଖୁସିରେ କଥାବାର୍ତ୍ତା କରୁଥିଲା। ଯେଚେକି ତା' ଜୀବନରେ କେଉଁ ଆନନ୍ଦ ଉତ୍ସବର ଦିନ ଆସି ପହଞ୍ଚିଛି!

ସେମାନଙ୍କ ଜୀବନର ସେହି ଦିନଟି ଆସି ପହଞ୍ଚୁଥିଲା। ସହରର ଆଭିଜାତ୍ୟସଂପନ୍ନ ପଞ୍ଚତାରକା ହୋଟେଲ୍‌ରେ ପାର୍ଟି। ସ୍ୱରାଜ ଓ ରତ୍ନାଙ୍କର ରେଜେଷ୍ଟ୍ରୀ ବିବାହ ସଂପନ୍ନ ହେବା ପରେ ପରେ ସେମାନେ ସେହି ହୋଟେଲରେ ରାତ୍ରୀ ଯାପନ କରିବାର ସ୍ଥିର କରାଯାଇଥିଲା।

ସମସ୍ତ ଆୟୋଜନ କରିଥିଲା ଅନୁପମା। ସେ ନକରିଥିଲେ ଏ ଦାୟିତ୍ୱ ତୁଲାଇଥାଆନ୍ତା କିଏ ?

ଆତ୍ମୀୟ, ବନ୍ଧୁ, ଅଫିସ୍‌ର ଅଧିକାଂଶଙ୍କୁ ନିମନ୍ତ୍ରଣ କରିଥିଲେ ସେମାନେ। ହସି ହସି ଅତିଥିମାନଙ୍କୁ ସ୍ୱାଗତ କରୁଥିଲା ଅନୁପମା। ସ୍ୱରାଜ୍ ଖୁସି ହେଉ। ଏହି ଗୋଟିଏ ଇଚ୍ଛାରେ ତା'ର ଯେପରି ପର ଲାଗିଯାଇଥିଲା। ସେତେବେଳେ କିଏ ଯଦି ପଚାରେ, ହସି ହସି କହେ ଅନୁପମା, ''ସ୍ୱରାଜ ରତ୍ନାକୁ ଭଲ ପାଇବ, ଅଥଚ ବିବାହ କରିବନି, ଏ କ'ଣ ଠିକ୍ ହୋଇଥାଆନ୍ତା ? ମୁଁ ଯଦି କାହାକୁ ଭଲ ପାଇଥାଆନ୍ତି ସ୍ୱରାଜ୍ କ'ଣ ମୋର ବିବାହ କରାଇ ନଥାନ୍ତେ ?

ଉଇ ଆର୍ ଗୁଡ୍ ଫ୍ରେଣ୍ଡସ୍।''

ଏତେବେଳେ ନିର୍ଲଜ ସ୍ୱରାଜ ଆସି କହେ, ''ଆନି, ପ୍ଲିଜ୍ ଦେଖ, ରତ୍ନାର ଭାଇ, ଭାଉଜ ନଖାଇ ଚାଲିଯିବାକୁ ଚାହୁଁଛନ୍ତି।''

''ନା.. ନା ତା' କିପରି ହବ? ମୁଁ ବୁଝୁଛି। ତୁମେ ପ୍ଲିଜ୍ ଦେଖ ଅଫିସ ଷ୍ଟାଫ୍ କେହି ଯେପରି ନଖାଇ ଚାଲି ନ ଯାଆନ୍ତି?''

ଏ ସଂପର୍କରେ ପ୍ରଶ୍ନ କରୁଥିବା ବନ୍ଧୁ ବିସ୍ମୟରେ ଚାହିଁ ରହିଥିବା ସମୟରେ ଅନୁପମା କହିଲା, ''କ୍ଷମା କରିବେ, ମୁଁ ଆସୁଛି। କ'ଣ କରାଯିବ? ଏତେ ବେଶୀ ଦାୟିତ୍ୱ, ଆମ ଦୁହିଁଙ୍କୁ ହିଁ ବୁଝିବାକୁ ପଡୁଛି।''

ଏଭଳି ଏକ ଦିନରେ ନୀରବରେ ନିଜ କୋଠରୀରେ କାନ୍ଦୁଥିଲେ ଜଣେ। ସେ ସୁଷମା। ଏସବୁ କ'ଣ ଚାଲିଛି ସେ ବୁଝିପାରୁ ନଥିଲେ। ଅନୁପମା, ସ୍ୱରାଜ ମିଳିମିଶି ସବୁ କାର୍ଯ୍ୟ କରି ଚାଲିଛନ୍ତି। ଥରଟିଏ ଅନୁପମା କହିଥିଲା, ''ମା, ରତ୍ନା ପାଖରୁ ତାଙ୍କୁ ନେଇ ଆସି ହବନି। ଏବେ ଗୋପନରେ, ପରେ ପ୍ରକାଶ୍ୟରେ ସ୍ୱରାଜ୍ ବିବାହିତ। ପତ୍ନୀକୁ ଛାଡି ଅନ୍ୟଜଣେ ନାରୀ ସହ ସଂପର୍କ ରଖିଲେ ଏ ପରିବାରର ଅସମ୍ମାନ ହେବନି କି?''

ସୁଷମା କରୁଣ ଦୃଷ୍ଟିରେ ଅନୁପମାକୁ ଚାହିଁ ରହିଥିଲେ, କିଛି କହିବାର ଶକ୍ତି ନଥିଲା। ଏବେ ବୟସର ନିରୁପାୟତା ସେ ଅନୁଭବ କଲେ। ଅନୁପମା ତାଙ୍କର ଅସହାୟତା ଉପଲବ୍ଧି କରି ଭିତରେ ଭିତରେ ଭାଙ୍ଗି ଯାଉଥିଲେ ମଧ୍ୟ ନିର୍ଦ୍ୱନ୍ଦରେ ନିଜର ଦାୟିତ୍ୱ ତୁଲାଇ ଚାଲିଥିଲା।

ସେଦିନ ପାର୍ଟି ପରେ ଘରକୁ ଫେରି କ୍ଳାନ୍ତ ହୋଇଥିଲେ ମଧ୍ୟ ଭଗତ, ନୀଳାମା'କୁ ସମସ୍ତଙ୍କ ଦାୟିତ୍ୱ ଭଲଭାବେ ବୁଝେଇ ବିଛଣାକୁ ଯାଇଥିଲା ଅନୁପମା।

ସ୍ୱରାଜ୍‌କୁ ସୁଖୀ ରଖିବାକୁ ସେ ତା'ର କର୍ତ୍ତବ୍ୟ କରି ସାରିଛି। ସେମାନେ ପରସ୍ପରଙ୍କୁ ପରିତ୍ୟାଗ କରିଛନ୍ତି। ତେଣୁ ଏ ଘରେ ରହିବାର ପ୍ରଶ୍ନ ନାହିଁ।

ସୁଷମାଙ୍କ ଆଖିରୁ ଲୁହ ଶୁଖୁନି। ସେ କାନ୍ଦି କାନ୍ଦି କହୁଛନ୍ତି, ''ତୁ କୁଆଡେ ଯିବୁ? ମୁଁ ତୋତେ ପାଖରୁ ଛାଡି ପାରିବିନି, ତୁ ଗଲେ ମୁଁ ବଞ୍ଚି ପାରିବିନି।''

ସେଦିନ ଅନୁପମାକୁ କୌଣସି କଥା ବିଚଳିତ କରୁନଥିଲା। ପିଲାମାନଙ୍କୁ ସ୍କୁଲ ପଠେଇ ଦେଇ ସେମାନଙ୍କର ବହିପତ୍ର, ଅନ୍ୟାନ୍ୟ କିଛି ଆବଶ୍ୟକୀୟ ଜିନିଷ ସହ ନିଜକୁ ସେ ପ୍ରସ୍ତୁତ କରୁଥିଲା ଘରଛାଡିବାକୁ। ପିଲାଙ୍କୁ ସେଦିନ

ସ୍କୁଲରୁ ନେଇ ଭାଇଙ୍କ ଘରେ ଛାଡ଼ିବାକୁ ସେ ଯୋଜନା କରିଥିଲା।

ଶାଶୁଙ୍କର ଏତିକି କଥାରେ ଭଳି ଯିବାର ନୁହେଁ ଅନୁପମା। ତାଙ୍କଠାରୁ ବିଦାୟ ନେଇ ସେ ବାହାରି ଯାଉଥିଲା, ନୀଳାମା' ଚିତ୍କାର କରି ଉଠିଲା, ''ବୋହୁମା, ଏ ଥରୁଛନ୍ତି କାହିଁକି ? ଯାଙ୍କର କ'ଣ ହେଲା ଟିକେ ଦେଖ ତ।''

କବାଟ ପାଖରୁ ଫେରି ଆସିଛି ଅନୁପମା। ସୁଷମାଙ୍କ ଜର ବଢ଼ିବାରେ ଲାଗିଛି। ସେ ପ୍ରଳାପ କରୁଛନ୍ତି, ''ତୁ ମୋ ନୟନର ମଣି। ମୋତେ ଛାଡ଼ି କୁଆଡେ ଯିବୁ ?''

ସେଇ ଦିନରୁ ଅନୁପମା ଯାଇ ପାରିନି। ସବୁ ବନ୍ଧନ ତୁଟିଯିବାପରେ ବି ସେ ରହିଯାଇଛି ଏ ମାୟାରେ ବାନ୍ଧିହୋଇ।

ପିଲା ଦୁହିଁଙ୍କୁ ସ୍କୁଲରୁ ନେଇ ଆସିଛି ସ୍ୱରାଜ୍। ସେମାନଙ୍କୁ ପୂର୍ବପରି ସ୍କୁଲରେ ଛାଡ଼ିବା, ବୁଲାଇନେବା, ବଗିଚାରେ ପିଲାଙ୍କ ସହ ପିଲା ହୋଇ ଖେଳିବା ପୁଣି ବାଛି ବାଛି ମାଛ, ମାଂସ, ପରିବା କିଣିବା, ଅନୁପମା ପାଖରେ ନିଜ ରୁଚିର ଖାଦ୍ୟ ବରାଦ କରିବା- ସବୁ ତ ଚାଲିଛି। ଅଥଚ ଅନୁପମା ସ୍ୱରାଜ୍‌ର କେହି ନୁହଁ !

ସେମାନେ ସମସ୍ତେ କହନ୍ତି, ତା'ବିନା ସବୁ ଅର୍ଥହୀନ। ଏ ଘର ତାକୁ ବାନ୍ଧି ରଖୁଛି। ଏମିତିରେ ସ୍ୱରାଜ୍‌ର ଟିକିଏ ଅସୁବିଧା ତ ସେ ସହିପାରେନାହିଁ।

ଅନୁପମା ସକାଳୁ ଚକ ପରି ଘୁରୁଛି। ଅସୁବିଧା କ'ଣ ? ଘନିଷ୍ଠ ବନ୍ଧୁଟିଏ ଭଳି ସ୍ୱରାଜ୍ ତା'ଠାରୁ ପରାମର୍ଶ ନିଏ, କିଛି ବାହାର କଥା, ଅଫିସ କଥା।

କିନ୍ତୁ ଏବେ ଏ ଅନୁପମା ଆଉ ଜଣେ। ସେ ଯେପରି ସ୍ୱରାଜ୍‌କୁ ନୂଆ କରି ଦେଖୁଛି। ଟିକିଏ ସ୍ପର୍ଶରେ ନିଜକୁ ହଚେଇ ଦେଇଛି।

''ମମି, ତୁମର ଫୋନ୍।''

ଅନୁପମା ସ୍ୱପ୍ନରୁ ଉଠିବା ଭଳି କବାଟ ଖୋଲିଦେଇ ଫୋନ୍ ଉଠାଇନେଲା। ଭାଉଜ ମନିକାର ଫୋନ୍। ଅନୁପମା ସହଜ ସ୍ୱରରେ ଉତ୍ତର ଦେଲା, ''ଆଜି ନୁହେଁ କାଲି ନିଶ୍ଚୟ ପହଞ୍ଚିବି।''

ସ୍ୱରାଜ୍, ରତ୍ନା ପାର୍ଟିରୁ ଫେରି ନାହାନ୍ତି। ପିଲାଙ୍କ ପାଠ ଦେଖିବାର ଶକ୍ତି ନଥିଲା ଅନୁପମାର। ସେମାନଙ୍କୁ ଖାଇବାକୁ ଦେଇ ବିଛଣାକୁ ପଠାଇ ଦେଲା ସେ। ବିଳମ୍ବ ନକରି ସୁଷମାଙ୍କ ସହ ରାତ୍ରିଖାଇବା ଶେଷ କରି ସେ ଶୋଇଗଲା।

ପରଦିନ ଶୀଘ୍ର ଅଫିସ ବାହାରି ଯିବାରୁ ସ୍ୱରାଜ୍ ସହ ତା'ର ଦେଖା ହୋଇ ନଥିଲା।

ଅଥଚ ସ୍ୱରାଜ୍ ପହଞ୍ଚିଥିଲା ତା' ଅଫିସରେ। ''ଆନି, ବାହାରେ ଲଞ୍ଚ୍ ଖାଇବା।''

ଅନୁପମା ପ୍ରତିବାଦ କରିନାହିଁ। ସ୍ୱରାଜ୍‌ର ଗାଡ଼ିରେ ନୀରବରେ ଆସି ବସିଲା ସେ।

''ମୁଁ ମୋ ଜୀବନକୁ ଫେରିଯିବାକୁ ଚାହେଁ। ରତ୍ନାକୁ ମୋ ମନୋଭାବ ଜାଣିବାକୁ ଦେଇନି। ମାତ୍ର ଆଉ ପାରିବିନି। ମୁଁ ତୁମକୁ ଚାହେଁ।''

ଏ ପର୍ଯ୍ୟନ୍ତ ଅନୁପମା ନୀରବରେ ଖାଉଥିଲା। ହଠାତ୍ ତା'ର କ'ଣ ହେଲା, ସ୍ୱରାଜ୍‌କୁ ସେ ଚାହିଁ ରହିଲା କିଛି କ୍ଷଣ। ତା'ପରେ ମୁହଁ ଖୋଲିଲା, ''ନା- ତୁମେ ଯେତେବେଳେ ଯାହା ଚାହିଁବ ତା' ହବ, ଅସମ୍ଭବ।''

ସ୍ୱରାଜ୍ ତାକୁ ଆଶ୍ଚର୍ଯ୍ୟରେ ଚାହିଁ ରହିଲା।

''ରତ୍ନାକୁ ବିବାହ କରିବା ପୂର୍ବରୁ ଏସବୁ ଭାବିବାର ଥିଲା। ଏବେ ନୁହେଁ। ତାକୁ ଛାଡ଼ିଦେଲେ ସେ କ'ଣ କରିବ? ତୁମ ବ୍ୟତୀତ ସେ କ'ଣ ଜାଣେ? କେବେ ଭାବିଛ ଏସବୁ? ତୁମର ଏ ଖେଳ କେତେ ଦିନ ଆଉ ଚାଲିଥିବ, ସ୍ୱରାଜ୍?''

''ମୁଁ ଭୁଲ୍ କରିଛି, ଆନି।''

''ଶୁଣ ରାଜ୍, ତୁମେ ରତ୍ନାକୁ ସୁଖୀ କର। ନିଜେ ସୁଖରେ ରହିବାକୁ ଚେଷ୍ଟାକର। ମୋତେ ଭୁଲିଯାଅ। ହଁ, ମୋର ବମ୍ବେ ହେଡ୍ ଅଫିସକୁ ଟ୍ରାନ୍ସଫର୍ ହୋଇଯାଇଛି...''

ଅନୁପମା ଖୁବ୍ ଶୀଘ୍ର ଉଠି ଚାଲିଗଲା। ସ୍ୱରାଜ୍ ସହ ଗାଡ଼ିରେ ଅଫିସ ଫେରିବାକୁ ତା'ର ଧୈର୍ଯ୍ୟ ନଥିଲା। □□

ସୁଚରିତା, ଶାରଦୀୟ ବିଶେଷାଙ୍କ, ୧୯୯୨

# ସେମାନେ ତିନିଜଣ

ମସୌରୀର କ୍ୟାମେଲ୍ ବ୍ୟାକ୍ ରୋଡ୍। ପର୍ଯ୍ୟଟକମାନଙ୍କ ଭିଡ଼ରୁ ରକ୍ଷା ପାଇବାକୁ ହେଲେ ମାଲ୍‌ରୋଡ୍‌ରୁ ଏ ପାଖକୁ ଚାଲି ଆସି କିଛିଟା ନିସ୍ତାର ମିଳେ।

ସେଇଠି ହଠାତ୍ ଆଉ ଥରେ ଭେଟିଥିଲି ସେମାନଙ୍କୁ। ଗଛ ତଳେ କାଠ ବେଞ୍ଚିଟିରେ ବସି ରହି ଅଦୂରସ୍ଥ ବରଫାବୃତ ପର୍ବତଶ୍ରେଣୀର ସୌନ୍ଦର୍ଯ୍ୟ ଉପଭୋଗ କରୁଥିଲେ ସେମାନେ। ସେଇ ଉଚ୍ଛ୍ୱସିତ ହସ, ଏକଦୃଷ୍ଟି, ଏକାଠି ଓଠ ହଲିବାର ଦୃଶ୍ୟ - ନାଲି, ନେଳି ବହୁ ବର୍ଣ୍ଣର ପୋଷାକ, ବହୁ ପ୍ରକାର ପଥର ଧାତୁ ନିର୍ମିତ ଗହଣାର ଏକତ୍ରୀକରଣ। ତିନୋଟି ସଖୀ କଣ୍ଢେଇ ଭଳି ମନେ ହେଉଥିଲେ। ଯୌବନର ଉଦ୍ଦୀପନା ସତେ କି ଝଲସି ଉଠୁଥିଲା ସେ ମୁଖରେ। ଶରୀର, ବୟସକୁ ଖାତିର୍ ନାହିଁ। ସାରା ବିଶ୍ୱ ପରିଭ୍ରମଣ କରିବାର ଦୁର୍ବାର ନିଶା।

ସେମାନଙ୍କ ମଧ୍ୟରେ କିଏ ବଡ, କିଏ ସାନ ଜାଣିବା ମୁସ୍କିଲ୍। ଗୌରବର୍ଣ୍ଣ, ଗଢଣ ଏକାଭଳି କୁହାଯାଇପାରେ। ଉଚ୍ଚତା ବି ସେହିପରି।

ଏଇ ଅଳ୍ପ କେତେ ବର୍ଷ ତଳେ-

ଟୁରିଷ୍ଟ ହଷ୍ଟେଲ, ପାଞ୍ଜିମ୍, ଗୋଆର ମଧ୍ୟସ୍ଥଳ। ସେଇଠି ଏକ ମଧ୍ୟମଧରଣର ଭୋଜନାଳୟର ବାଲ୍‌କନିରେ ବସିରହିଥିଲୁ ଆମେ। ଦୃଷ୍ଟି ଆକର୍ଷଣ କରିଥିଲା ସ୍ୱର୍ଣ୍ଣବସ୍ତ୍ରପରିହିତା ମାଣ୍ଡଭୀ। ଫେରୀମାନଙ୍କର ଯିବାଆସିବା ଚାଲିଥାଏ। ଆମ ଟେବୁଲ୍‌ରେ ପ୍ରାତଃଭୋଜନ ତଥାପି ପରଷାଯାଇନାହିଁ।

ଆମଠାରୁ ଅଳ୍ପ କିଛି ଦୂରେଇ ଠିଆ ହୋଇଥିବା ଏଇ ପର୍ଯ୍ୟଟକ କେତେଜଣଙ୍କୁ ସୌଜନ୍ୟର ବିରୁଦ୍ଧାଚରଣ କରି ବିସ୍ମିତ ଚକ୍ଷୁରେ ବାରମ୍ବାର ଚାହିଁ ଦେଉଥିଲି ମୁଁ। ଯା'ପରେ କୌତୂହଳ ସମ୍ବରଣ କରି ନ ପାରି ଉଠିଯାଇଥିଲି ସେମାନଙ୍କ ପାଖକୁ। ସେତେବେଳକୁ ପାଖ ଟେବୁଲ୍ ଅଧିକାର କରି ୱେଟରକୁ ନିର୍ଦ୍ଦିଷ୍ଟ ଖାଦ୍ୟର ବରାଦ ଦେଇସାରିଥିଲେ ସେମାନେ।

''କ୍ଷମା କରିବେ, ଆପଣମାନେ ବୋଧହୁଏ ଏଇଠି ରହୁଛନ୍ତି ?''

''ହଁ, ଆପଣ ?'' ହସି ହସି ସେ ମଧ ଇଂରାଜୀରେ ପଚାରିଲେ।

ପରିଚୟ ଦେଇ ଆମର ରୁମ୍ ନମ୍ବର କହିବା ପରେ ସେମାନେ ମଧ ପାଖାପାଖି କୋଠରୀରେ ରହୁଥିବାର ଜଣାଇ ମିସେସ୍ ସାକ୍‌ସେନା ମୋ ସହ କରମର୍ଦ୍ଦନ କଲେ।

''ଏଥର ଚିହ୍ନେଇ ଦିଏ- ମୁଁ ନିର୍ମଳା ସାକ୍‌ସେନା, ଲିଡର୍ ଅଫ୍ ଦି ଡେଲିଗେସନ୍, ଅର୍ଥାତ୍ ବଡ ଭଉଣୀ। ଯେ ସୁନୀତା କାଉଲ୍, ମଝି। ଆଉ ଯେ, ପୁଷ୍ପା ଖାନ୍ନା, ଆମର କନିଷ୍ଠା ଭଗ୍ନୀ। ବୁଝିଲେ ତ ? ଉଇ ଆର୍ ଥ୍ରୀ ସିଷ୍ଟର୍ସ, ଥ୍ରୀ ଫ୍ରେଣ୍ଡସ୍ ଠୁ।''

ହସି ହସି ପରସ୍ପର ସହ ହାତ ମିଳାଉଥିଲେ ସେମାନେ। ଏତେ ବେଶୀ ହସ, ଏତେ ବେଶୀ ପ୍ରାଣପ୍ରାଚୁର୍ଯ୍ୟ! ସେମାନଙ୍କ ସହ ବନ୍ଧୁତ୍ୱପୂର୍ଣ୍ଣ ହସରେ ଯୋଗଦେଇଥିଲି ମୁଁ।

ଶ୍ରୀମତୀ ସାକ୍‌ସେନା ପିନ୍ଧିଥିଲେ ନୀଳ ଜିନ୍ ପ୍ୟାଣ୍ଟରେ ଗାଢ଼ ନାଲି ରଙ୍ଗର ଟି'ସାର୍ଟ। ପତଳା ଗଢ଼ଣ, ତୀକ୍ଷ୍ଣ ନାକ, ସଂପୂର୍ଣ୍ଣ ଶୁଭ୍ର ବବ୍ କେଶ କାନ୍ଧ ପର୍ଯ୍ୟନ୍ତ ଝୁଲି ରହିଛି। ହାତରେ ଗୋଛାଏ ହ୍ୱାଇଟ୍ ମେଟାଲ୍‌ର ଚୁଡ଼ି। ବେକରେ ଅନୁରୂପ ହାରଟିଏ। ବାମ କଚଟିରେ ସରୁ ରିଷ୍ଟୱାଚ୍। କାନ୍ଧରେ ଝୁଲୁଛି ହ୍ୟାଣ୍ଡବ୍ୟାଗ୍, କ୍ୟାମେରା ଇତ୍ୟାଦି, ଇତ୍ୟାଦି।

ଶ୍ରୀମତୀ କାଉଲ୍‌ଙ୍କ ଦେହରେ ନାଲି, ହଳଦୀ ରଙ୍ଗର ସାଲୱାର୍, କୁର୍ତ୍ତା।

ଶୁଭ୍ର ଗହଳ କେଶ ଇଂରାଜୀ 'ୟୁ' ସେପ୍‌ରେ କଟାଯାଇଛି। ବେକ, କାନରେ ପଥରର ଗହଣା। ହାତରେ ମ୍ୟାଚ୍ କରା ଗୋଛାଏ ନାଲି, ହଳଦୀ ଚୁଡ଼ି। ତିନି ଭଉଣୀଙ୍କ ମଧ୍ୟରେ ସେ ଅପେକ୍ଷାକୃତ ଗମ୍ଭୀର।

ସାନ ପୁଷ୍ପା ଖାନ୍ନା। ହୁଏତ ଚିତ୍ରତାରକାଙ୍କ ଅନୁକରଣରେ ଏକ ନୂଆ ଷ୍ଟାଇଲ୍‌ର ପୋଷାକ ଓ ଗହଣାରେ ସଜ୍ଜିତ ହୋଇଥିଲେ ଏବଂ ସେହି ଦିନରେ ସେ ଯେ ସଦ୍ୟ ଷାଠିଏ ବର୍ଷ ଅତିକ୍ରମ କରି ଏକଷଠିରେ ପଦାର୍ପଣ କରିଛନ୍ତି, ତା' ନିର୍ମଳା ସାକ୍‌ସେନା ବହୁପୂର୍ବରୁ ପ୍ରକାଶ କରିଥିଲେ। ପୁଷ୍ପାଙ୍କର ଜନ୍ମତିଥି ସ୍ମରଣରେ ତିନି ଭଉଣୀ ଉତ୍‌ଫୁଲ୍ଲ ହୋଇଉଠିଥିଲେ। ସେଇ ଉପଲକ୍ଷେ ଆୟୋଜିତ ଏକ ଲେଟ୍ ନାଇଟ୍ ଡିନର ପାର୍ଟିରେ ଆମେ ଦୁହେଁ ଯେପରି ନିଶ୍ଚିତ ଭାବରେ ଯୋଗ ଦେବୁ ସେଥିନେଇ କଥା ଦେବାକୁ ସସ୍ନେହ ଅନୁରୋଧ ଜଣାଇଥିଲେ ସେମାନେ। ଏପରି ଅପ୍ରତ୍ୟାଶିତ ପରିସ୍ଥିତିରେ ସେମାନଙ୍କୁ କୌଣସି ଉତ୍ତର ନ ଦେଇପାରି ଅସହାୟ ଦୃଷ୍ଟିରେ ମୁହଁ ଘୁରାଇ ଯଶୋବନ୍ତଙ୍କୁ ଚାହିଁ ରହିଲି ମୁଁ।

ସେ ତତ୍‌କ୍ଷଣାତ୍ କହି ଉଠିଲେ, ''ଥ୍ୟାଙ୍କ୍ ୟୁ ମ୍ୟାଡମ୍। ଆମେ ନିଶ୍ଚୟ ଆସିବୁ।''

ୱେଟରମାନେ ଦୁଇଟି ଟେବୁଲରେ ପ୍ରାତଃଭୋଜନ ପରଷି ଦେଇଥିଲେ। ମୁଁ କ୍ଷମା ମାଗି ଆମ ଟେବୁଲ୍‌କୁ ଠିକ୍ ଉଠିଆସିବା ମୁହୂର୍ତ୍ତକ ପୂର୍ବରୁ ସୁନୀତା କାଉଲ୍‌ଙ୍କ ଗମ୍ଭୀର ମୁହଁରେ ସ୍ମିତହାସ୍ୟର କ୍ଷୀଣ ରେଖାଟିଏ ଦେଖା ଦେଇଥିଲା। ସେ ତାଙ୍କ ଫଳରସ ଗ୍ଲାସଟି ମୋତେ ଧରେଇଦେଇ, ଆଉ ଅଳ୍ପ କିଛି ସମୟ ସେମାନଙ୍କ ସହ କଟେଇବାରେ ମୋ ସ୍ୱାମୀ ହୁଏତ ଆପତ୍ତି କରିବେନାହିଁ, ଏଭଳି କିଛି କହି ବସିଲେ ଏବଂ ଆଦୌ ସମୟ ଅପଚୟ ନ କରି ଯଶୋବନ୍ତ ମୋ ପାଇଁ ଆସିଥିବା ଫଳରସ ଗ୍ଲାସଟି ସୁନୀତାଙ୍କୁ ଧରାଇଲେ।

ଚିହ୍ନା ପରିଚୟ ନ ଥାଇ ମଧ୍ୟ ମାତ୍ର କେତେ ମିନିଟ ମଧ୍ୟରେ ଆମେ ପୂର୍ବ ପରିଚିତ ବାନ୍ଧବୀ ଭଳି ଗପିବାକୁ ଆରମ୍ଭ କରି ଦେଇଥିଲୁ।

ଗ୍ଲାସଟି ଓଠ ପାଖକୁ ନେଇ ପଚାରିଲି, ''କେବେଠୁଁ ଆସିଛନ୍ତି ?''

''ଓଃ ବେଶ୍ କିଛି ଦିନ ହେବ,'' ପୁଷ୍ପା ଖାନ୍ନା ଓଠରେ ନ୍ୟାପ୍‌କିନ୍ ଛୁଆଇଁ ନେଇ ଉତ୍ତର ଦେଲେ।

ମିସେସ ସାକ୍‌ସେନା କହିଲେ, ''ଦିଲ୍ଲୀରୁ ସିଧା ଆସିଲୁ ବାଙ୍ଗାଲୋର;

ସେଠାରେ କିଛିଦିନ କଟିଗଲା ବୁଲାବୁଲିରେ। ତା'ପରେ ଏଠି ପହଞ୍ଚିଛୁ। ଆଉ ବୋଧହୁଏ ଦିନଟିଏ ରହିବାକୁ ହେବ। ପରବର୍ତ୍ତୀ ଯାତ୍ରା ବମ୍ବେକୁ। କେତେଜଣ ବନ୍ଧୁଙ୍କ ସହ ଦେଖା, ସାମାନ୍ୟ ସପିଂ ପରେ ଦିଲ୍ଲୀ ଫେରିଯିବୁ।''

''ଏମିତି ଏକା ଏକା ? ହଁ, ଆପଣମାନଙ୍କୁ କ୍ଲାନ୍ତ ଲାଗେନା ?''

''ଅର୍ଥାତ୍ ଷାଠିଏବର୍ଷୋତ୍ତର ବୟସରେ ବି ସାଥିରେ ପରିବାର, ସ୍ୱଜନ କେହି ନାହାନ୍ତି ! ଏଇୟା ତ ?''

କହୁ କହୁ ଖୁବ୍ ହସୁଥିଲେ ନିର୍ମଳା ସାକ୍ସେନା। ସେଇ ପ୍ରାଣଖୋଲା ହସ ଅନ୍ୟ ଦୁଇ ଭଉଣୀଙ୍କୁ ମଧ୍ୟ ସଂକ୍ରମିତ ହୋଇଥିଲା।

''ଅନେକଥର ଏହି ପ୍ରଶ୍ନର ସମ୍ମୁଖୀନ ହୋଇଛୁ ଆମେ। ମାତ୍ର ଆମର ଆଗ୍ରହ, ମନୋବଳ ସାମନାରେ ଏ ବୟସ ହାର ମାନିଛି।''

ବମ୍ବେରୁ ଆସିଥିବା ଏକ ବଡ ଜାହାଜର ପର୍ଯ୍ୟଟକମାନଙ୍କୁ ଅତି ଆଗ୍ରହରେ ଅନାଇ ନେଇ ସୁନୀତା କାଉଲ୍ ନିଜ ପ୍ଲେଟଟି ପାଖକୁ ଘୁଞ୍ଚାଇ ଆଣିଲେ।

ମିସେସ୍ ସାକ୍ସେନା କିନ୍ତୁ ଅନର୍ଗଳ କଥା କହିଚାଲିଥିଲେ, ''ଆମେ ତିନିଜଣ ଏକାଠି ବୁଲୁଛୁ। ଏକା ହେଲୁ କିପରି ? ମୋର ସ୍ୱାମୀ ଅର୍ଥାତ୍ ମିଷ୍ଟର୍ ସାକ୍ସେନା ବ୍ୟବସାୟ ନେଇ ବହୁବାର ଷ୍ଟେଟ୍ସ ଯାଇଛନ୍ତି। ପୃଥିବୀର ଅନ୍ୟାନ୍ୟ ଦେଶ ମଧ୍ୟ ବାଦ୍ ଯାଇନି ତାଙ୍କର। ତେଣୁ ଏବେ ସେ ସ୍ଥିର ହୋଇ ବସିବାକୁ ପସନ୍ଦ କରନ୍ତି।

ମିଷ୍ଟର କାଉଲ୍ ଧନୀ ଘରର ଏକମାତ୍ର ପୁତ୍ର। ପ୍ରଚୁର ଅର୍ଥ ଅଥଚ ବୁଲିବାର ଟିକିଏ ବି ସଉକ ନାହିଁ। ବିଭିନ୍ନ ଶାସ୍ତ୍ରାଲୋଚନାରେ ସମୟ କାଟନ୍ତି ସେ। ଲକ୍ଷ୍ନୌ, ଦିଲ୍ଲୀରେ ବଡ ବଡ ଦୁଇଟା କୋଠା। ତାଙ୍କର ଦୁଇଟି ଯୋଗ୍ୟପୁତ୍ର ବିଶିଷ୍ଟ ଶିଳ୍ପପତି।

ଆଉ ପୁଷ୍ପାର ସ୍ୱାମୀ, ଆମ ପ୍ରଫେସର୍ ଖାନ୍ନା ଭିଜିଟିଂ ପ୍ରଫେସର୍ ଭାବେ ସାରା ଏସିଆ ଓ ୟୁରୋପର ବହୁ ବଡ ବଡ ଦେଶ ବୁଲି ଆସିବା ପରେ ଆଉ କ'ଣ ବୁଲିବାକୁ ଇଚ୍ଛା କରିବେ ଯେ ?

ଜଞ୍ଜାଳ ପ୍ରାୟ ଶେଷ ହୋଇଯାଇଛି। ଆମ୍ଭେମାନେ ମୁକ୍ତ ପକ୍ଷୀ ଭଳି ଉଡିବୁଲି ଏ ବୈଚିତ୍ର୍ୟଭରା ପୃଥିବୀକୁ ବାରମ୍ବାର ଦେଖି ଉପଭୋଗ କରିବାକୁ ଚାହୁଁ। କିଏ ଆମର ସାଥୀ ହେବ ? ସ୍ୱାମୀମାନେ ? ଅତିକ୍ରାନ୍ତ ବୟସରେ ଅନିଚ୍ଛାକୃତ

ବନ୍ଧୁତ୍ୱ ? ବାଧ୍ୟତଃ କର୍ତ୍ତବ୍ୟ ମନେ କରୁଥିବା, ନିଜ ନିଜ ସାଂସାରିକ କାର୍ଯ୍ୟରେ ଛନ୍ଦି ହେଉଥିବା ଆମର ପୁତ୍ରକନ୍ୟା ? ନା, ତା' ଆମେ ଚାହୁଁନା। ସେମାନଙ୍କୁ ହଇରାଣ କରିବା ଆମର ଇଚ୍ଛା ନୁହେଁ।''

ମିସେସ୍ ସାକ୍‌ସେନା ନୀରବ ହୋଇଗଲେ।

''ଏମିତି ସ୍ୱାଧୀନ ଭାବେ, ଏକା ମନ, ଏକା ଇଚ୍ଛା ନେଇ ନ ବୁଲିଲେ ଆମର ଜମିବ କିପରି କୁହନ୍ତୁ ତ ?'' ପୁଷ୍ପା ଖାନ୍ନା କଥାଟା ସହଜ କରି ନେଇଥିଲେ।

ଠିକ୍ ସେତିକିବେଳେ ସେମାନଙ୍କ ପାଖରୁ ଆମ ଟେବୁଲକୁ ଉଠିଯିବା ପାଇଁ ମୁଁ ପ୍ରାୟ ବାହାରି ଆସିବାକୁ ବସିଛି, ଯଶୋବନ୍ତ ଟୋଷ୍ଟ ଦୁଇଟିରେ ବଟର ଲଗାଇ ଆମ୍‌ଲେଟ ସହ ପ୍ଲେଟ୍‌ଟିଏ ମୋତେ ଧରାଇ ଦେଇଥିଲେ।

''ଓଃ, ହ୍ୱାଟ୍ ଏ ଓ୍ୟାଣ୍ଡରଫୁଲ ହଜ୍‌ବ୍ୟାଣ୍ଡ !'' ମିସେସ୍ ନିର୍ମଳା ସାକ୍‌ସେନା ଆନନ୍ଦରେ ଚିତ୍କାର କରି ଉଠିଲେ।

''ଥ୍ୟାଙ୍କ୍ ୟୁ,'' ମୁଁ ହସି ହସି ଉତ୍ତର ଦେଇ ଖାଇବାରେ ମନଦେଲି।

ସତେ ଯେପରି ସେଇଠି ସବୁକଥା ଶେଷ ହୋଇଗଲା, ତିନି ଭଉଣୀ ମଧ୍ୟ ଟିକିଏ ଚୁପ୍ ହୋଇଯାଇଥିଲେ।

କିନ୍ତୁ ଅଳ୍ପ କଥା କହୁଥିବା ସୁନୀତା କାଉଲ୍ ଧୀରେ କଥା କହିବା ଆରମ୍ଭ କଲେ, ''ମାନୁଛି, ଆମେ ଅତ୍ୟନ୍ତ ସୁଖୀ। ଏମିତି ଦେଖିଲେ ପ୍ରଚୁର ଅର୍ଥ। ସ୍ୱାମୀ ସନ୍ତାନର ପରିପୂର୍ଣ୍ଣ ସଂସାର। ପୁତ୍ରକନ୍ୟାମାନେ ବେଶ୍ ସେଟ୍‌ଲଡ୍। ମାତ୍ର ପରିବାରଟିଏ ବାହାରୁ ଯେତେ ସୁଖୀ ମନେ ହେଲେ ବି ଦୈନନ୍ଦିନ ସଂସାର ଯାତ୍ରା ମଧ୍ୟରେ ଟିକିଏ ଖୁଟ୍‌ଖାଟ୍ ଲାଗି ରହିବା ଏବଂ ଆକସ୍ମିକ ବଜ୍ରପାତ ଭଳି ଏହି ଟିକକ ଅଶାନ୍ତି ମଧ୍ୟ କ୍ଷଣକରେ ସମସ୍ତ ସୁଖକୁ ଛାଳିଦେବା ପରି ମନେହୁଏ ନାହିଁ କି ? କ'ଣ କହୁଛୁ, ଦିଦି ?''

ଏଭଳି ସମୟରେ ତର୍କ ବିତର୍କରୁ ନିଜକୁ ଦୂରେଇ ନେଇ ଏ ସବୁରେ ମୁଁ ମୁଣ୍ଡ ଖେଳାଇବି କାହିଁକି ? - ଏଇ ଭାବ ଆଣିବାକୁ ଯାଇ ପାଣି ଗ୍ଲାସଟି ଉଠାଇ ପିଇବାରେ ମନ ଦେଲି।

ଦିଦି ଅର୍ଥାତ୍ ନିର୍ମଳା ସାକ୍‌ସେନା ଉତ୍ତର ଦେବାକୁ ଯାଇ କହି ପକାଇଲେ, ''ପ୍ଲିଜ, ଲିଭ୍ ଇଟ୍।''

''ଦ୍ୟାଟସ୍ ନଥିଂ ଟୁ ଓ୍ୱରି। ଉଇ ଆର୍ ରିୟେଲି ହ୍ୟାପି।'' କାନ୍ଧ ନଚାଇ ଖୁସିରେ ଉତ୍ତର ଦେଲେ ପୁଷ୍ପା ଖାନ୍ନା।

''ହଁ, କେହି ଆମ ପାଇଁ ବ୍ୟଗ୍ର ନୁହଁ, ବ୍ୟସ୍ତ ବି ନୁହଁ। ସେମାନେ ଠିକ୍ ଅଛନ୍ତି; ଘରସଂସାର ଆମ ବିନା ଅଚଳ ହୋଇନି। ଏଥିନେଇ ପରିବାରରେ କାହାରି ଇଚ୍ଛା ଅନିଚ୍ଛା ପ୍ରତି ଗୁରୁତ୍ୱ ଦେଉନା ଆମେ। ଉଇ ଆର୍ ଫ୍ରି ବାର୍ଡସ୍। ଯା'ପରେ ନିଜ ନିଜ ଘରେ ଦଶଦିନ ବିଶ୍ରାମ, ପୁନର୍ବାର ଯାତ୍ରା ଆରମ୍ଭ। ଅବଶ୍ୟ ଏ ମଧ୍ୟରେ ଭବିଷ୍ୟତ ପ୍ରୋଗ୍ରାମ ମଧ୍ୟ ହୋଇଯାଇଛି।''

ପୁଣି ଥରେ ସେଇ ସମ୍ମିଳିତ ହାସ୍ୟ। ଆମ ସମସ୍ତଙ୍କର ଖାଇବା ଶେଷ ହୋଇଛି। ସେମାନେ ଉଠି ଠିଆ ହେଲେଣି।

''ବାୟ୍, ସି ୟୁ ଇନ୍ ଦି ଇଭିନିଂ।''

ଦ୍ରୁତ ପଦକ୍ଷେପରେ ଆଗେଇ ଯାଇ ପାହାଚରେ ଓହ୍ଲାଇଗଲେ ସେମାନେ। ସ୍ୱଚ୍ଛ ରହଣି ମଧ୍ୟରେ ମିନିଟିଏ ବି ସମୟ ନଷ୍ଟ ନ କରି ପ୍ରତିଟି ଦିନକୁ ଉପଭୋଗ କରିବାକୁ ସେମାନେ ତତ୍ପର।

ଯଶୋବନ୍ତ, ମୁଁ ଲିଫ୍ଟ ଅପେକ୍ଷାରେ ଥିଲୁ। ସେମାନେ କିନ୍ତୁ ରାସ୍ତାକୁ ଓହ୍ଲାଇ ଗଲେଣି ଅନେକବେଳୁ।

ଏଠାରେ ଶୀତ ନାହିଁ। ଅଥଚ ଏ ସକାଳର ସୁନ୍ଦର ଖରା ମାଧୁର୍ଯ୍ୟମୟ। ଆମେ ଫେରୀରେ ଉଠିଲୁ। ଆର ପାଖକୁ ଯାଇ ଦୁଇଟି ବେଳାଭୂମିରେ ସମୟ କଟାଇବୁ। ଏଥିନେଇ ତରତର ହେବାର କିଛି ନାହିଁ। ରିଲାକ୍ସ, ରିଲାକ୍ସ-କିଏ ଯେପରି ନିଜ ଭିତରୁ କହିଉଠୁଛି। ପାଦ ଥମୁଛି, ହାତରେ ମନଇଚ୍ଛା ସମୟ। ଆମେ କଷ୍ଟରେ ଦୌଡିବାକୁ ଚାହୁଁନା। ଅଥଚ ଏ ଯାତ୍ରାକୁ ସମ୍ପୂର୍ଣ୍ଣ ଉପଭୋଗ କରିବାକୁ ଖୁବ୍ ଇଚ୍ଛା।

କାଲାନ୍‌ଗୁଟ୍‌ରୁ ଅଞ୍ଜନାବିଚ୍। ସମୁଦ୍ରକୂଳରେ ଭ୍ରମଣ, ଲଞ୍ଚ୍ ଟେବୁଲ୍‌ରେ ସମୟସାପେକ୍ଷ ସୁସ୍ୱାଦୁ ଖାଦ୍ୟ, ପାନୀୟ, ସାମାନ୍ୟ ବିଶ୍ରାମ।

ସେଦିନ ସନ୍ଧ୍ୟାରେ ଫେରିବାବେଳକୁ ବେଶ୍ ବିଳମ୍ବ ହୋଇଯାଇଥିଲା।

ମାଣ୍ଡଭୀ କୂଳରେ ପର୍ଯ୍ୟଟକମାନଙ୍କର ଭିଡ ଜମିଛି। ରାତ୍ରି ମହୋତ୍ସବର ଆରମ୍ଭ। ପାଖ ହୋଟେଲମାନଙ୍କରେ ସଙ୍ଗୀତ ନୃତ୍ୟର ସ୍ୱର ସେମାନଙ୍କୁ ଆକୃଷ୍ଟ

କରୁଥିଲା ।

ଆମେ ରୁମ୍‌ର ଚାବି ମାଗିନେଇ ଯଥାଶୀଘ୍ର ଉପରକୁ ଚାଲି ଆସିଥିଲୁ । ସାରାଦିନର କ୍ଲାନ୍ତି ଉପଶମ ନିମନ୍ତେ ଟିକିଏ ଗାଧୋଇ ନେବା ଇଚ୍ଛାରେ ମୁଁ ତରତର ଥିଲି । ଘଣ୍ଟାଏରୁ ଅଧିକ ସାଂଧ୍ୟଭ୍ରମଣ, ମନଭରି ରାତ୍ରିର ଏ ସହରକୁ ଦେଖିବାକୁ ଇଚ୍ଛା, ପରେ ପରେ ପୁଷ୍ପା ଖାନାଙ୍କ ଜନ୍ମଦିନ ପାର୍ଟିରେ ଲେଟ୍‌ନାଇଟ୍ ଡିନର୍‌ର ନିମନ୍ତ୍ରଣ ।

ଠିକ୍ ତାଲା ଖୋଲିବାକୁ ଯାଉଛି, ପାଖ କୋଠରୀରେ କାହାର ଅସ୍ପଷ୍ଟ ଯନ୍ତ୍ରଣାକାତର ସ୍ୱର ମୋତେ ସ୍ତବ୍ଧ କରିଥିଲା । କେହି ଜଣେ ଖୁବ୍ ଅସୁସ୍ଥ ହୋଇପଡିଛି, ଖୁବ୍ କାଶୁଛି । ବାଲ୍‌ଟିରେ ଗରମପାଣି ଧରି ରୁମ୍‌ବୟ କଲିଂବେଲ୍ ଦେଉଥିଲା । କବାଟ ଖୋଲି ବାହାରକୁ ବାହାରି ଆସିଲେ ପୁଷ୍ପା ଖାନ୍ନା । ଦେହରେ ସୁସଜ୍ଜିତ ପୋଷାକ ପରିବର୍ତ୍ତେ ପରିଧାନ ନାଇଟ୍ ଗାଉନ୍ । ଚିନ୍ତାରେ ମୁଖଶ୍ରୀ ମଳିନ ।

''ସୁନୀତା ଅଚାନକ ଅସୁସ୍ଥ ହୋଇପଡିଛି । କେବେ କିପରି ତା'ର ଏମିତି ହୁଏ; ପୁଣି ଠିକ୍ ହୋଇଯାଏ ।''

''କିନ୍ତୁ ଡାକ୍ତରଙ୍କୁ ଖବର ଦେଇଛନ୍ତି ତ ?'' ମୋ କଥା ଶୁଣିବାକୁ ଅପେକ୍ଷା ନ କରି ଖୁବ୍ ତରତରରେ ସେ କବାଟ ବନ୍ଦ କଲେ ।

ଆମ କୋଠରୀର ଚାବି ଖୋଲିବାରେ ବିଳମ୍ବ ହେଉଥିଲା । ସକାଳର ସେଇ ଉଲ୍ଲସିତ ଆନନ୍ଦ, ବାହାରେ ସାନ୍ଧ୍ୟ ଉତ୍ସବର ଅର୍କେଷ୍ଟ୍ରାର ସ୍ୱର, ଅନ୍ୟ କକ୍ଷଟିରେ ଛାତିରେ ଯନ୍ତ୍ରଣା ହେତୁ ସୁନୀତା କାଉଲ୍‌ଙ୍କର ବ୍ୟସ୍ତତା ସବୁ କିପରି ଅସ୍ୱସ୍ତିକର ମନେହେଉଥିଲା । □□

ଝଂକାର, ୧୯୮୮

# ସବାରୀ

-ମଲ୍ଲୀପୁର ଦାଶଚୌଧୁରୀ ? ରାସ୍ତାଟି ଛାଡି ଆସିଲ ବାବୁ।

-ଆଉ କେତେ ବାଟ ହେବ ?

-ହେଇତ, ସେଇ ଯୋଉ ଗହଳିଆ ଆମ୍ବତୋଟା ଦିଶୁଛି, ପାଖାପାଖି ଆମ୍ବ ନଡିଆ ବଗିଚା; ସବୁ ତ ତାଙ୍କରି। ଖୋଜେ ବାଟ ଏଠୁଁ। ବଗିଚା, ପୋଖରୀ ଚକଜମି ସବୁ ଲାଗିଛି। ଏ ଇଲାକାରେ ତାଙ୍କୁ କିଏ ନ ଜାଣେ ? ଗାଡି ନେଇ ଯିବେ ତ ଆଉ ରାସ୍ତାରେ ଟିକିଏ ବୁଲାଣି ପଡିବ।

-ମନ୍ଦିର ପାଖ ନା ?

-ବାବୁ ଜାଣିଛନ୍ତି ତ ? ହଁ, ସେଇ ମହାଦେବ ମନ୍ଦିର। ଗଛ ଅଢୁଆଳରେ ଦିଶୁନି ଏଠୁଁ।

ଅରବିନ୍ଦ ଗାଡି ପଛକୁ ଫେରାଇଲେ। ସମ୍ଭବତଃ ପାଖ ଗାଁରେ ଦହି, ଛେନା, ଘିଅ ବିକି ଫେରୁଛି ଲୋକଟି। ଗଛତଳେ ବିଶ୍ରାମ ନେଇଥିଲା। ଏଥର ଝାଳ ପୋଛି ହୋଇ କାନ୍ଧକୁ ଭାର ଉଠେଇ ଚାଲିବାକୁ ଆରମ୍ଭ କଲା।

ଶେଷ ଚୈତ୍ରର ଅତିକ୍ରାନ୍ତ ସକାଳ। ଖରା ବେଶ୍ ଟାଣ, ମେଘମୁକ୍ତ ଆକାଶ। କିଛି ଦୂରରେ ଦିଶୁଛି ପାହାଡ। ଗଛପତ୍ର ଗହଳରେ ଛପିଗଲେ କେତେ ଛୋଟ ଛୋଟ ଗାଁ ସବୁ। ଜିପ୍ ଧାଇଁଛି। ପ୍ରଧାନ ରାସ୍ତାରୁ ଆସି ଧାନବିଲ ଧାରରେ

ଲମ୍ୱି ଯାଇଥିବା ଅଣଓସାରିଆ ରାସ୍ତାଟିରେ ଯିବାକୁ ହେବ ଆଉ ଅଳ୍ପ କେତେ ଦୂର।

ସାମନା ସିଟ୍‌ରେ ଅରବିନ୍ଦ, ଗୌତମ ଉତ୍ସୁକ ଦୃଷ୍ଟିରେ ଚାହିଁରହି ପାଖ ସଂକୀର୍ଣ୍ଣ ରାସ୍ତାଟିରେ ଜିପ୍‌ଟି ଯାଇ ପାରିବ କି ନାହିଁ ଚିନ୍ତା କରୁଛନ୍ତି ବୋଧହୁଏ।

ପଛରେ ଅହଲ୍ୟା, ଗୌତମଙ୍କର ପତ୍ନୀ, ଅରବିନ୍ଦଙ୍କର ଶଳାଭାଉଜ। ଅଜନ୍ତା, ଅରବିନ୍ଦଙ୍କର ପତ୍ନୀ, ଗୌତମଙ୍କର ସାନ ଭଉଣୀ। ଅନ୍ୟଟି ଷୋଳ ସତର ବର୍ଷର ଝିଅ ସୁପ୍ରିୟା। ବମ୍ୱେରୁ ଛୁଟୀ କଟାଇବାକୁ ଆସିଥିବା ପିଉସା ପିଉସୀଙ୍କର ସାଙ୍ଗ ନ ଛାଡିବ ବୋଲି ସେ ମଧ୍ୟ ସେଦିନ କଲେଜ ବନ୍ଦ କରି ଧାଇଁ ଆସିଛି।

ଅଜନ୍ତା, ସୁପ୍ରିୟା ପାଖାପାଖି ବସିଛନ୍ତି। ଅହଲ୍ୟା ଝିଅ ସୁପ୍ରିୟାକୁ ଚାହିଁ ହସୁଛନ୍ତି। ମନେ ପଡୁଛି କେତେ ବର୍ଷ ତଳର କଥା। କେତେ ସାନ ହେଇଥିଲା ୟେ। ତିନି, ଚାରି ବର୍ଷର ପିଲା, ନୂଆକରି ଏ ଗାଁକୁ ଗୌତମଙ୍କ ସଙ୍ଗେ ସେ ଆସିଥିଲେ ବଡ ନଣନ୍ଦଙ୍କର ଝିଅ ବାହାଘରକୁ। ରାସ୍ତାରେ ଗରମ ହେଲାରୁ ଝିଅ କାନ୍ଦିଲା।

''ଜଙ୍ଗଲରୁ ବାଘ ଆସିଯିବ ଏବେ।'' ଗୌତମ ତାକୁ ଡରେଇଲେ। ଝିଅ ଚୁପ୍ କରିଗଲା। ଅହଲ୍ୟାଙ୍କ କୋଳରେ ଜାକିଜୁକି ହୋଇ ଶୋଇ ପଡିଲା ଭୟରେ।

ଅଜନ୍ତାକୁ ଏଇ କଥା କହି ଦୁହେଁ ଖୁବ୍ ହସୁଥିଲେ। ସୁପ୍ରିୟା ବାପା ଓ ପିଉସୀଙ୍କୁ ରାସ୍ତା ଖୋଜିବାରେ ସାହାଯ୍ୟ କରୁଥିଲା।

ଜିପ୍‌ଟି ମନ୍ଦିର ପାଖାପାଖିରେ ପହଞ୍ଚି ଗଲାଣି। ମଲ୍ଲୀପୁର ଦାଶଚୌଧୁରୀଙ୍କ ଉଆସ। ଜମିଦାରୀ ସିନା ଉଠି ଯାଇଛି ଖାନଦାନୀର ଧାସ ତଥାପି ରହିଛି।

ଚିଠି ପହଞ୍ଚିଲା ତିନି ଚାରିଦିନ ତଳେ। କର୍ତ୍ତା ଲେଖିଛନ୍ତି ବଡଶଳାଙ୍କ ପାଖକୁ। ଗୋଟିଏ ଯୁଗ ପରେ ଖୋଜିଛନ୍ତି ସେମାନଙ୍କୁ। ଅଶୁଭବାର୍ତ୍ତା ବହନ କରି ଆସିଛି ଚିଠିଟି।

''କାମ ସରିଲାଣି, କ୍ରିୟା କର୍ମ ଶେଷ ହେବଣି, ତଥାପି ଯିବାକୁ ହବ।'' ଗୌତମ ସ୍ଥିର କରି କହିଲେ, ''ଦୁଃଖବେଳେ ଠିଆ ନ ହେଲେ କି ବନ୍ଧୁ ସେ ?''

''ତୁମ ଭଣଜା ଦୁଃଖରେ ମ୍ରିୟମାଣ, ନାନୀ କତରାଳାଗି, ତୁମକୁ ଅଧିକ କ'ଣ ଲେଖିବୁ, ଆମକୁ ଟିକେ ଦେଖିଯିବ...।'' ଗୌତମ ଏଇ କେତେ ଧାଡି ଦୋହରାଇଲେ। ଅଫିସ୍‌ରୁ ଦିନଟିଏ ଛୁଟୀ ଆଣି ବାହାରି ପଡିଲେ।

ପୂର୍ବରୁ ଯାହା ଚିଠି ଆସିଛି, ଅଲଗା ପ୍ରକାରର। ସବୁ କାମର ନିର୍ଦ୍ଦେଶ। ମୋ ଝିଅମାନଙ୍କ ପାଇଁ ଯୋଗ୍ୟ ବରପାତ୍ର ଦେଖ, କାହାପାଇଁ ସ୍କୁଲ୍ କଲେଜରେ ସିଟ୍ ଖୋଜିଦିଅ। ଯା'ପରେ ଚାକିରି, ପୁଅମାନଙ୍କର ବନ୍ଧୁ ସମସ୍ୟା। ଯାକୁ କୁହ, ତାକୁ କୁହ।

ରୀତିମତ ବିରକ୍ତ ହୋଇଉଠନ୍ତି ଗୌତମ। କର୍ତ୍ତା ବୁଝିଗଲେ କି କ'ଣ। ଯା'ପରେ ସମ୍ପର୍କ ଥାଇ ନ ଥିବା ଭଳି। ଚିଠି ନାହିଁ, ଆଉ ବାହାଘର, ବ୍ରତଘରକୁ ଖୋଜାଲୋଡା ନାହିଁ।

ଅଥଚ ଏବେ-

ଜିପ୍ ରହିଲା କାଠ ଫାଟକ ପାଖରେ। ଘର ସାମ୍ନାରେ ତଥାପି ପୁରୁଣା ଫୁଲ ଫଳର ଛୋଟ ବଗିଚାଟି। ଏବେ ରହୁଛନ୍ତି ସେମାନେ ଚୌପାଢୀ ଖଞ୍ଜାରେ। ଆଉ ଚାରି ପାଞ୍ଚ ଖଞ୍ଜା ଭଙ୍ଗା ହୋଇଯାଇଛି। ପ୍ରତିବର୍ଷ ଚାଳଛାଉଣି, ଘର ଲିପାପୋଛା। କେତେ ପୁରୁଷର ଘର ହେଲାଣି। ''ଭଙ୍ଗା ହବନି କି କୋଠା ହବନାହିଁ'' କର୍ତ୍ତାଙ୍କର ଜେଜେବାପା ଆଉ ବାପାଙ୍କର ବଜ୍ରଗମ୍ଭୀର ଆଦେଶ !

ଜମିଦାରୀ ଉଠିଲା। ଅଗତ୍ୟା ଅଯତ୍ନରେ ଭାଙ୍ଗି ଭାଙ୍ଗି ଯାଉଥିବା ପୁରୁଣା ଖଞ୍ଜା ସବୁ ମାଟିରେ ମିଶା ହେଲା। ଉଭା ଯେତେ ପୋତା ସେତେ। ଖର୍ଚ୍ଚ କରିବାକୁ ହାତ ଯାଏନି। ଲକ୍ଷ୍ମୀଙ୍କ ପ୍ରତି ଏ ଯେ ତୀବ୍ର ଅବମାନନା ! ଯାହା ଅଛି ଥାଉ, ଏତେ ଖର୍ଚ୍ଚ ବାର୍ଚ୍ଚ କ'ଣ ? ଟଙ୍କା ଉଡେଇ ଦବାକୁ କେତେ ଘଡ଼ି ? ଜନ୍ମରୁ ଏଇ ଚିନ୍ତାଧାରାରେ ବଢ଼ି ଆସିଲେ ପିଲାଏ। ଝିଅ ସବୁ ଅଳ୍ପ ବହୁତେ ପାଠ ପଢି ବାହାସାହା ହୋଇ ବିଦା ହେଲେ। ପୁଅ ଦୁଇଜଣ ଗାଁ ପାଖ ଅଳ୍ପ ଦୂରର କଲେଜରେ ପାଠ ପଢୁଥିଲେ। ପାଠ ଶେଷ ହେବଣି ବୋଧହୁଏ।

କିଏ କ'ଣ କରୁଛି ସେ ଖବର ଆଉ ରଖି ନାହାନ୍ତି ଗୌତମ।

ଗାଡିରୁ ନ ଓହ୍ଲେଇ ଭିତରୁ ଚାହିଁଲେ ଅହଲ୍ୟା। ଯାହା ଦେଖିଥିଲେ, ଏତେ ବର୍ଷ ପରେ ସବୁ ଠିକ୍ ସେମିତି ରହିଛି। କିଛି ପରିବର୍ତ୍ତନ ନାହିଁ। ବାହାର ବାରଣ୍ଡାରେ ରହିଛି କୋଉ ପୁରୁଣା ଅମଳର ସବାରୀ। ଶୁଣା ଅଛି କର୍ତ୍ତାଙ୍କର

ଢେଢେମା' ପରେ ମା' ଏଥିରେ ବସି ବୋହୂ ହୋଇ ଆସିଥିଲେ ଏ ଘରକୁ। କାଠରେ କେତେ କମକୁଟ ଖୋଦେଇ, ମଖମଲି ଢରିଲଗା କନାର ଝାଲେରୀ। ଚିରିଗଲାଣି, ମଇଳା ବସି ବିରୂପ ଦିଶୁଛି। ତଥାପି ସବାରୀର ପୂର୍ବ ସୌନ୍ଦର୍ଯ୍ୟ ଅହଲ୍ୟାଙ୍କୁ ଆନମନା କଲା। ଏଇ ସବାରୀକୁ ଦେଖି ନିର୍ଭୁଲ୍ ଭାବରେ ଦାଶଚୌଧୁରୀ ଉଆସକୁ ଚିହ୍ନି ହେବ।

ଠିକ୍ ଗାଡି ରହିଛି କି ନାହିଁ, ମାଟିରେ ସେମାନଙ୍କ ପାଦ ନ ପଡୁଣୁ କିଏ ଜଣେ ବୃଦ୍ଧା, ଆଲୁଳାୟିତକେଶା ଘର ଭିତରୁ ଧାଇଁ ଆସି ସେ ଧୂଳିଧୂସରିତ ଦାଣ୍ଡଟାରେ କଚାଡି ହୋଇ ପଡିଗଲେ। ବିକଳ ସ୍ୱରରେ ଚିତ୍କାର କରି ବାହୁନି ଉଠିଲେ ସେ, ''ହା ମୋ ଧନମାଳୀ, ରକ୍ଷଣୀରତନ, ମୋତେ ଅଛୁଣୀ କରି ତୁ କୁଆଡେ ଗଲୁ... ଆଉ କ'ଣ ଦେଖିବ ଆସିଛ, ମୁଁ ନ ମରି ଯାହା ବଞ୍ଚି ରହିଛି-''

ନିଶ୍ଚୁପ ଧରିତ୍ରୀ, ଆକାଶ ଥରି ଉଠିଲା ଏ କାରୁଣ୍ୟରେ। ସେମାନେ ସମସ୍ତେ କିଂକର୍ତ୍ତବ୍ୟବିମୂଢ ମୂର୍ତ୍ତିବତ୍ ସ୍ଥିର ହୋଇଗଲେ।

ପ୍ରଥମେ ମୁହଁ ଖୋଲିଲା ଅଭିନ୍ନ, ''ଏ କ'ଣ ବୋଉ, ମାମୁଁ ମାଈଙ୍କୁ ଏଠି ଠିଆ କରିଦେଲ କାହିଁକି ? ଚାଲନ୍ତୁ ମାମୁଁ, ଆସ ମାଈଁ।''

ଦୃଷ୍ଟି ଫେରିଲା ଏ ପାଖକୁ। ଅଚିହ୍ନା ମଣିଷକୁ ଦେଖିବା ଭଳି ସେମାନେ ଚାହିଁ ରହିଥିଲେ ଅଭିନ୍ନକୁ। ଯା'ରି ପାଇଁ ତ ସମସ୍ତେ ଆସିଛନ୍ତି। ଚିଠି ସେଇଭଳି ଲେଖା ଥିଲା, ''ଅଭି ଆଉ ବଞ୍ଚିବ ନାହିଁ, ବାବୁ। ଏ ବୟସରେ ଏ ଦୁର୍ବିପାକ ତା'ରି ଭାଗ୍ୟରେ ଲେଖା ଥିଲା।''

ଅଭିର ବୋଉ ସାଷ୍ଟମ ହୋଇ ଘର ଭିତରକୁ ଗଲେ। ଭିତର ବାରଣ୍ଡାରେ ସପ ଖଣ୍ଡିଏ ପକାଇ ଭାଉଜ, ସାନଭଉଣୀ ଅଜନ୍ତାର ହାତ ଧରି ବସାଇଲେ। ''କେତେ ସୁନ୍ଦରୀଟିଏ ହେଇଛି ଲୋ ମୋ ଧନ'', ସୁପ୍ରିୟାକୁ କୋଳେଇ ନେଇ ଟିକିଏ ଗେହ୍ଲା କଲେ ସେ। ଚଉକି ଦୁଇ ତିନିଖଣ୍ଡ ଆଣି ମାମୁଁ, ସାନମଉସାଙ୍କୁ ବସିବାକୁ କହିଲା କର୍ତ୍ତାଙ୍କ ସାନପୁଅ ରବୀନ୍ଦ୍ର। ସମସ୍ତଙ୍କୁ ଚା' ଗ୍ଲାସଟିମାନ ଧରେଇଲା ଅଭିନ୍ନ।

ଏମାନଙ୍କ ସ୍ୱାଗତ ପାଇଁ ସବୁ ଶୃଙ୍ଖଳିତ ବ୍ୟବସ୍ଥା। ଚା' ଜଳଖିଆ, ପାନ ଓ ଅନ୍ୟାନ୍ୟ ଭଲମନ୍ଦ କଥାବାର୍ତ୍ତା। ମଧ୍ୟାହ୍ନ ଭୋଜନର ଆୟୋଜନ ନିମନ୍ତେ

ଦୁଇ, ତିନୋଟି ଲୋକଙ୍କର ଦୌଡାଦୌଡି ଚାଲିଛି। ଜାଲିଆ ବଡ ମାଛ ଧରିଛନ୍ତି ପୋଖରୀରୁ। ଅଭିନ ତରତର ହୋଇ ବାଡି କବାଟ ପାଖକୁ ଚାଲିଗଲା। ଏଣେ ପରିବା ହିସାବ ବୁଝେଇବା ପାଇଁ ଅନ୍ୟ ଲୋକଟି ଅପେକ୍ଷା କରିଛି।

ସାଇକେଲ ମାରି ଦଶ କିଲୋମିଟର ଦୂର ବଡ ହାଟକୁ ସେ ଯାଇଥିଲା। ଫୁଲକୋବି, ଟମାଟୋ, ଫଳ, ମିଠା ଇତ୍ୟାଦି ଏ ପାଖରେ ମିଳିବ ନାହିଁ। ଅଭିନ ତାକୁ ପୂର୍ବ ଦିନରୁ ବରାଦ କରିଥିଲା ଯିବାକୁ।

ଘରକୁ ଆସିଥିବା ଏଇ ଦୁର୍ଲଭ ଅତିଥିମାନଙ୍କ ପାଇଁ ସେମାନେ ସମସ୍ତେ ତତ୍ପର। କେତେ ସହଜରେ ଚାଲିଛି ସବୁ। ସତେ ଯେପରି ଏ ପରିବାରରେ କିଛି ବି ଅଘଟଣ ଘଟିନାହିଁ!

ଅହଲ୍ୟା ବ୍ୟସ୍ତ ହୋଇ କହିଲେ, ''ନାନୀ, ଏ ବେଳରେ ଏସବୁ ଏତେ ବ୍ୟବସ୍ଥା କାହିଁକି? ସବୁ ତ ଘର ଲୋକ। ଯାହା ଅଛି ସେଥିରେ କ'ଣ ଟିକେ ରାନ୍ଧିଦେଇ ନଥା'ନ୍ତେ ସମସ୍ତେ ମିଶି।''

ତାଙ୍କ ହାତକୁ ସାଦା ପାନ ଖଣ୍ଡେ ଧରେଇ ଦେଇ ଚନ୍ଦ୍ରିକା କହିଲେ, ''ଏ କି କଥା କହୁଛୁ, ଅଳି? ଏତେ ଦିନକେ ଭାଇଟା ମୋର ଆସିଛି। ତୁମ ସମସ୍ତଙ୍କୁ ଦେଖି ମୋ ଅନ୍ତର ଯାହା ଲାଗୁଛି...।''

ଯାଙ୍କର କଥା କଥାକେ ଆଖିରେ ପାଣି, କାନ୍ଦ କାନ୍ଦ ଭାବ, ସବୁଦିନେ ଦେଖି ଆସିଛି ଅହଲ୍ୟା। ଅସଲ କଥାଟା କିନ୍ତୁ କେହି କହୁ ନାହାନ୍ତି ଯେ!

ସୁପ୍ରିୟା, ଅଜନ୍ତା ପରସ୍ପରକୁ ଚାହିଁଛନ୍ତି। ସେମାନଙ୍କ ଚାହାଣୀରେ ସେଇ ଭାବ, ''ଏ କ'ଣ? ଏଠି କ'ଣ ଉତ୍ସବ ଚାଲିଛି!''

ଗୌତମ ଧୈର୍ଯ୍ୟର ସହ ସେଇ ଜମିବାଡି ଇତ୍ୟାଦି କଥାମାନ ଶୁଣୁଛନ୍ତି।

ଅହଲ୍ୟା ସମ୍ଭାଳି ପାରିଲେନି। ସେ ପଚାରିଦେଲେ କର୍ତ୍ତାଙ୍କୁ, ''କିମିତି ଏ ସବୁ ହେଲା? ଚିଠିରେ ତ ଆପଣ କିଛି ଲେଖି ନ ଥିଲେ?''

''ହିଟରରେ ରାନ୍ଧୁଥିଲା। ସବୁଦିନ ଚା' ଜଳଖିଆ ସେଇ ହିଟରରେ କରେ। କେଉଁଠି ତାରରେ ହାତ ବାଜିଗଲା ସେଦିନ।''

ଏ ସମ୍ପର୍କରେ ନିର୍ଲିପ୍ତ, ନିରାସକ୍ତ ଉତ୍ତର। ପରେ ପରେ ପୁଣି ସେଇ ଜମିଜମା, ଦଖଲ, ସେ ଜନିତ ମକଦ୍ଦମା, ଖଜଣା ଇତ୍ୟାଦି ଇତ୍ୟାଦି ଗଳ୍ପରେ ମଜ୍ଜିଗଲେ ସେ। ସବୁଠାରୁ ବଡ ସମସ୍ୟା ସାନ ପୁଅ ରବିର ବେକାରୀ।

"ସେଇ ଚିନ୍ତା ଯେ ଆମକୁ ଲାଗିଛି, ବାବୁ। ତୁମର ହାକିମ ବନ୍ଧୁମାନଙ୍କୁ କହିବାକୁ ହେବ, ଯାହା ଟଙ୍କା ପଇସା ଲାଗିବ ଦିଆଯିବ ପଛକେ ତୁମେ କିଛି କର।" ବଡ ଶଳାଙ୍କୁ ନିର୍ଦ୍ଦେଶ ଦେଲେ କର୍ତ୍ତା। ସେଇ ଏକ କଥାରେ ଆସିବାବେଳୁ ଗୁରୁତ୍ୱ ଦେଉଛନ୍ତି ସେ।

ଗୌତମ ନିରୁତ୍ତର। ଅରବିନ୍ଦ ଆଉ କେତେ ଘଣ୍ଟା ସମୟ କଟେଇ ଶୀଘ୍ର ଫେରିଯିବା ବିଷୟ ଚିନ୍ତା କରୁଛନ୍ତି କି କ'ଣ।

ଏତିକିବେଳେ ଚନ୍ଦ୍ରିକା ଆରଘରୁ କାଇଁଚବୁଣା ହାତ ପଙ୍ଖା ଖଣ୍ଡିଏ ଆଣି ଭାଉଜଙ୍କୁ ବିଞ୍ଚି ବସିଲେ, କହିଲେ, "ଅଳି, ବଡମନ୍ତ୍ରୀ କିଏ ତୁମର ଭଲ ଚିହ୍ନା ପରିଚୟ ଅଛି ?"

"ଆଲୋ ବୋଉ, ଖବର କାଗଜରେ ମାଈଁଙ୍କର ଫଟ ଦେଖିଲୁ ନା ସେଦିନ ?" ଅଭିନ୍ନ ଚନ୍ଦ୍ରିକାଙ୍କୁ ବାକି କଥା କୁହାଇ ଦେଲାନାହିଁ।

"ତୁ ବୋଉ କ'ଣ ବୁଝୁ ? ମାଈଁ ପରା ବଡ ନେତ୍ରୀ ହୋଇଛନ୍ତି। ମହିଳା କଂଗ୍ରେସ ମିଟିଂ ପାଇଁ ମାଈଁଙ୍କର ସେଇ ମନ୍ତ୍ରୀଙ୍କ ସଙ୍ଗେ କେତେ ଆଲୋଚନା ଚାଲିଛି। ଫଟୋ ବାହାରିଥିଲା କାଗଜରେ। ମାଈଁ ମ, ମୋତେ କିମିତି ଏଥର ଟିକେଟ ମିଳିବ, କିଛି କର। ତୁମମାନଙ୍କର ସଭିଏଁ ପରିଚିତ, ବନ୍ଧୁ। ଆମେ ଏଠି ଯେତେ ସମାଜସେବା କଲେ, ଦେଶ ପାଇଁ ମୁଣ୍ଡ ଖେଳେଇଲେ, କିଏ ତା'ର ହିସାବ ରଖୁଛି ?"

କାଠ ଚୂଲୀ ପାଖରେ ବସି କରେଇରେ ମାଛ ଭାଜୁଛି ଅଭିନ୍ନ। ସେଇଠି ବସି ତା'ର ଭାଷଣ ଚାଲିଛି। ବାରମ୍ବାର ଝାଳ ପୋଛି ଦେଇ ସେ ଗପି ଚାଲିଛି।

ସୁପ୍ରିୟା ସାନପିଉସୀକୁ ଚାହିଁ ନୀରବରେ ବୋଧହୁଏ କହୁଛି, "ଦେଶସେବୀଙ୍କୁ ଦେଖୁଛ ତ !"

ଅହଲ୍ୟା ପୁଣି ଫେରିଲେ ତାଙ୍କ ପ୍ରଶ୍ନକୁ, "ନାନୀ, ତୁମେ ସେଦିନ ଘରେ ଥିଲଟି ? କିମିତି ଏ ସବୁ ହେଲା ? ବଡ ଦୁଃଖର କଥା !"

"ସୋମବାର ଥିଲା, ତା'ର ଓପାସ। ଭଲରେ ରନ୍ଧାବଢ଼ା କଲା। ଆମ ସଭିଙ୍କୁ ଖାଇବାକୁ ବାଢ଼ି ଦେଲା। ତା' ଶୋଇଲା ଘରେ ପଶି ସପ ଖଣ୍ଡିଏ ପକାଇ ପଙ୍ଖା ଖୋଲି ଶୋଇଗଲା... ସନ୍ଧିଆ ହେଲା। ଘରେ ସଞ୍ଜବଳିତା ଜଳିନି।

ଦେଖିଲାବେଳକୁ କାମ ସଇଲାଣି ?'' ଆଖି ପୋଛିଲେ ସେ।

''ହିଟରରେ ରାନ୍ଧୁଥିଲା !'' ଅଜନ୍ତା ବିସ୍ମୟରେ ପଚାରିଲା।

''ଜାଣିନି ମା', ସେଇ ଘରେ ହିଟର ଥିଲା। ପଙ୍ଖାରୁ ଇଲେକ୍ଟ୍ରିତାର ଝୁଲୁଥିଲା କହୁଛନ୍ତି।''

ସୁପ୍ରିୟା ଆଗତୁରା ସେ ଘର ଦେଖିବାକୁ ଉଠିଗଲା। ଅହଲ୍ୟା ମଧ୍ୟ ଉଠି ଠିଆ ହେଲେ ଯିବାକୁ। ସାନ ନଣନ୍ଦ ଅଜନ୍ତାର ମୁହଁରେ ବିରକ୍ତିର ଭାବ, କାହାକୁ କିଛି କହି ପାରୁନାହିଁ। ସେମାନେ ଅଭିର ଶୋଇବା ଘର ପାଖରେ ପହଞ୍ଚି ସାରିଥିଲେ।

ଅନ୍ଧାରିଆ ସନ୍ତସନ୍ତିଆ କୋଠରୀ, କାନ୍ଥରେ ଦେଢ଼ଫୁଟିଆ ଛୋଟ ଝରକାଟିଏ। ସେଇବାଟେ କିଛି ଆଲୋକ ଆସୁଥିଲା। ଝରକା ପାଖ କାନ୍ଥକୁ ଲାଗି ରଖା ହୋଇଛି ଶିଶୁ କାଠର ରଙ୍ଗଛଡା ପୁରୁଣାକାଳିଆ ଗୋଟିଏ ବଡ ପଲଙ୍କ, ମଇଳା ଚିକିଟିଆ ଚଦର, ତକିଆ, କିଛି କନ୍ଥା, ଲୁଗାପଟା। ଝାଳ ମଇଳା ଗନ୍ଧ ହେଉଥିବା ସାର୍ଟ, ଗଞ୍ଜି, ଫୁଲ୍‌ପ୍ୟାଣ୍ଟ, ଲୁଙ୍ଗି ଅସ୍ତବ୍ୟସ୍ତ ହୋଇ ଝୁଲୁଛି ଖଟ ବାଡାରେ। ଏଇ ଛୋଟ କଣିକିଆ ଘରଟିରେ କେତିକି ଜିନିଷ !

ପୁରୁଣା ଢ଼ଙ୍ଗର କାଠ ଆଲମାରୀ, ସିନ୍ଦୁକ, ଟ୍ରଙ୍କ୍, ବାକ୍ସ କେତୋଟି ତାଲା ପଡି ରହିଛି। ଦେଖିଲେ ମନେ ହେଉଛି ବହୁବର୍ଷର ଏ ଘର ଅବ୍ୟବହୃତ ହୋଇ ଏମିତି ପଡିଛି। କେବଳ ଇଲେକ୍ଟ୍ରିକ୍ ପଙ୍ଖାଟି ପୁରୁଣା ନୁହେଁ। ସମ୍ଭବତଃ ନିକଟରେ ଏ ଗାଁକୁ ଇଲେକ୍ଟ୍ରିକ୍ ଆସିଛି।

''କାହିଁ ଭାଉଜ, ପଙ୍ଖାରୁ ତାର କେଉଁଠି ଝୁଲୁଛି ?'' ଅଜନ୍ତା ତରତରରେ ପଚାରି ଦେଲେ ଅହଲ୍ୟାଙ୍କୁ। ସେତେବେଳେ ଅହଲ୍ୟା ତନ୍ନ ତନ୍ନ କରି କ'ଣ ଯେମିତି ଖୋଜି ପକଉଥିଲେ ସେ ଘରଟାରେ।

''ହାଓ ବାର୍‌ବରସ୍ ! ତାକୁ ମାରି ଦେଇଛନ୍ତି, ବୋଉ।'' ସୁପ୍ରିୟା ନିଜ ମତକୁ ସୁଦୃଢ କଲା। ଅହଲ୍ୟା ପଛକୁ ଚାହିଁଲେ। ଭାଗ୍ୟକୁ ଚନ୍ଦ୍ରିକା ଏ ସବୁ ଶୁଣି ନାହାନ୍ତି। ସେଇ ଘରୁ ଯାଇ ମାଛ ତରକାରୀ ପାଇଁ ମସଲା କାଢୁଥିଲେ ସେ।

ଅହଲ୍ୟାଙ୍କ ମନ ମାନୁନି, କିଛି ନ ଜାଣି କିଛି ନ ବୁଝି ପାରିବାର ଯନ୍ତ୍ରଣା ତାଙ୍କୁ ଅତିଷ୍ଠ କରୁଛି। ଏଣେ ଠା' ବଢ଼ା ହେଲାଣି। ବଡ ଭଣଜା

ଅଭିନ୍ନ ଖୋଜୁଛି ତାଙ୍କୁ ।

ନିଜେ ସେ ଶ୍ରଦ୍ଧାରେ ରନ୍ଧାରନ୍ଧି କରିଛି ସମସ୍ତଙ୍କ ପାଇଁ । ଖାଇବାକୁ ବଢାବଢି ସାରି ସେଇ କଥା ସେ ସଗର୍ବେ ଘୋଷଣା କରୁଛି ଖାଇବା ପାଖରେ । ''ବୁଝିଲ ମାଈଁ, ବୋଉ ଆଉ ଏ କାମ ପାରୁନି, ମୁଁ ବି କ'ଣ କେବେ ଘରେ ଥାଏକି । ମୋତେ ଖୋଜିଲେ ବି ମୁଁ କୁଆଡେ ଥାଏ କେହି ପାଆନ୍ତି ନାହିଁ । ରାତି ରାତି ବାହାରେ ରହିଯାଏ ଦରକାର ପଡିଲେ । ଆଜି ତୁମେ ସବୁ ଆସିଛ ବୋଲି ମୁଁ ରହିଛି ।''

''ତୁମେ ବାହାରେ ଏତେ କ'ଣ କର ?'' ସୁପ୍ରିୟା ପଚାରୁଛି ।

''ତୁ ପିଲାଲୋକ, ଏବେ କିଛି ବୁଝି ପାରିବୁନି । ସେ ସବୁ ସମାଜସେବା, ଦେଶସେବା ବି କହିପାର । ଘରେ ଘରେ ଭୋକ, ଉପାସ, ରୋଗ, ଯନ୍ତ୍ରଣା ଲାଗି ରହିଛି । ଅଶାନ୍ତି, କଳି ତକରାଳ, ଜମିବାଡି ନେଇ ଭାଇବିବାଦ । କିଏ ଏସବୁ ମୀମାଂସା କରୁଛି ? ଏଇ ଅଭିନ୍ନ ଦାଶଚୌଧୁରୀ ।'' ଆତ୍ମ-ଅହମିକାରେ ଫୁଲି ଉଠୁଥିଲା ଅଭିନ୍ନ ।

''ବୋଉକୁ ପଚାର, ମୁଁ ଘରେ କେବେ ଖାଏ ? ଖାଇବାଟା ସେଇଆଡେ ଉଠିଯାଏ ।''

ଅଭିନ୍ନର ଖୁସି ଖୁସି ଭାବ, ବଡପଣର ବିଜ୍ଞାପନ ଅସହ୍ୟ ମନେ ହେଲା ଅହଲ୍ୟାଙ୍କୁ । ଅନ୍ୟର ଘରେ ଶାନ୍ତି ପ୍ରତିଷ୍ଠା ଅଥଚ ନିଜ ଘରେ ?

''ବୁଝିଲୁ ଅଭି, ପରଘର କଥା ପଛକୁ ଥାଉ । ବାପା, ବୋଉ ତୋର ବୁଢାବୁଢୀ ହେଲେଣି । ଘର ସମ୍ପତ୍ତିବାଡି ରକ୍ଷଣାବେକ୍ଷଣ କରି ପାରିଲେ କେତେ ବଡ କଥା । ଏବେ ତୋ ଉପରେ ସବୁ ଦାୟିତ୍ୱ । ତୋ ବାପା ବୋଉଙ୍କ ଦେହ ପା', ଘର, ବାହାର ବୁଝାବୁଝି କରିବାକୁ ତ ହେବ । ଯା'ପରେ ଯାହା ସମୟ ପାଇବୁ, ମନ ଇଚ୍ଛା ସମାଜ ସେବା କର, କିଏ ମନା କରୁଛି ?'' ଏପର୍ଯ୍ୟନ୍ତ ଖୁବ୍ କମ୍ କଥା କହୁଥିବା ଅଜନ୍ତା ଉଚିତ କଥା କେତେ ପଦ କହିଦେଲା ଭାବି କର୍ତ୍ତା ଉତ୍‌ଫୁଲ୍ଲିତ ହେଲେ ।

''ଆଜି, ଅଭିନାକୁ ସେଇକଥା ବୁଝା । ସେ କ'ଣ କାହା କଥା ଶୁଣୁଛି ?''

''ତୁମେ ଚୁପ୍ କର ବାପା, ସବୁ କଥାରେ ଆଉ ମୁଣ୍ଡ ଖେଳାଅନା । ବୟସ ବଢିଲା । ଖାଇବାକୁ ମିଳୁଛି । ବାସ୍, ଚୁପଚାପ୍ ବସି ଠାକୁରଙ୍କ ନାମ

ନିଅ ଏଥର। ଆଉ କି କାମ? ସବୁ ଠିକ୍ ଚାଲିବ। ବୁଝିଲ ତ ବ୍ୟସ୍ତ ହେବା ଦରକାର ନାହିଁ। ସମାଜସେବା ବିନା ଏ ଜୀବନର କ'ଣ ମୂଲ୍ୟ?''

ସମସ୍ତଙ୍କ ଗିନାରେ ମାଛ ତରକାରୀ, ଥାଳୀରେ ଫୁଲକୋବି ଭଜା ଆଉଥରେ ବାଢ଼ୁ ବାଢ଼ୁ ଶେଷଧାଡି କଥାଟି ପୁଣି ଥରେ ଉଚ୍ଚାରଣ କଲା ଅଭିନ।

ଅହଲ୍ୟାଙ୍କର ସତକୁ ସତ କାଶ ହେଲା। ତଣ୍ଟିରେ ଭାତଗୁଣ୍ଡା ଅଟକିଗଲା। ସେ ପାଣି ଗ୍ଲାସ ଉଠେଇ ପିଇଲେ। ଅଚ୍ଚନ୍ତା ଅଧା ଖିଆରୁ ଉଠି ହାତ ଧୋଇଲା। ପଛେ ପଛେ ସୁପ୍ରିୟା। ପରିସ୍ଥିତି ସଂପୂର୍ଣ୍ଣ ଅସ୍ୱସ୍ତିକର। ଏତେ କଥା ପରେ କର୍ତ୍ତାଙ୍କର ନୀରବତା ଅହଲ୍ୟାଙ୍କୁ ବାଧୁଛି। ଅନ୍ୟମାନଙ୍କ ପାଟିରେ କଥା ନାହିଁ। ଏଥର ସୁପ୍ରିୟା ସାହସର ସହ କହି ପକାଇଲା, ''ସାନ ପିଉସା, ପଞ୍ଚାଅଶୀ କିଲୋମିଟର ରାସ୍ତା ଡ୍ରାଇଭ୍ କରି ଯିବାକୁ ହେବ। ରାତି ହେବା ପୂର୍ବରୁ ଭୁବନେଶ୍ୱରରେ ପହଞ୍ଚିବା ନା?''

''ହଁ, ଏବେ ଯିବା,'' ଅରବିନ୍ଦଙ୍କର ସଂକ୍ଷିପ୍ତ ଉତ୍ତର।

ବାଡିରେ ଆମ୍ବ, ନଡିଆ, ପଣସ, ସପୁରୀ, ଜାମୁରୋଳ, ପାଚିଲାକଦଳୀ, କେତେ କ'ଣ ଫଳଗଛ। ପୋଖରୀରେ ମାଛଚାଷ ପୁଣି ଆରପଟେ ବହୁପ୍ରକାର ଖରାଟିଆ ପନିପରିବା, ଶାଗ। ମୂଲିଆ ଲାଗିଛନ୍ତି। ଆଜି ତଦାରଖ ହେଇ ପାରୁନି। ସମସ୍ତେ ଏଆଡେ ବ୍ୟସ୍ତ।

ସେମାନେ ସମସ୍ତେ ବାଡିପଟେ ବୁଲି ଦେଖି ଦାଣ୍ଡକୁ ଆସିବେ। ସୁପ୍ରିୟା ବାପା, ପିଉସାମାନଙ୍କ ସଙ୍ଗେ ବୁଲୁଛି। ଅଚ୍ଚନ୍ତା ଚନ୍ଦ୍ରମାଙ୍କ ପାଖରେ ବସି ଦେହପା' ବିଷୟ କଥାବାର୍ତ୍ତା କରୁଥିଲା।

ରବୀନ୍ଦ୍ର ମାଈଁଙ୍କୁ ମିଠାପାନ ଖଣ୍ଡିଏ ଭାଙ୍ଗି ଧରାଇଲା। ସେମାନେ ବି ପଛେ ପଛେ ବାଡିପଟକୁ ଆସିଲେ।

''ମୋ ଚାକିରି ତୁମକୁ ଲାଗିଲା, ମାଈଁ!'' ଅତି ଅନ୍ତରଙ୍ଗ ଧୀର ସ୍ୱରରେ ସେ କହୁଛି, ''ମାମୁଁଙ୍କୁ କହି ଯାହା ହେଲେ ଶୀଘ୍ର କରିବ। କିଛି ଭଲ ଲାଗୁନି ଏଠି।''

''ହଁ, ହଁ, ନିଶ୍ଚୟ। ମାମୁଁ ବି ମନେରଖି ଚେଷ୍ଟା କରିବେ ଯେ।''

''ରବି, ଗୋଟିଏ କଥା ପଚାରିବି। କିଛି ମନେ କରିବନି।''

''ତୁମେ ପଚାରିବ; ମୁଁ ପୁଣି ଭାବିବି କ'ଣ?'' ରବି ଆଉଟିକେ ଲାଗି

ଆସିଲା ଅହଲ୍ୟାଙ୍କ ପାଖକୁ।

"ଆଚ୍ଛା ରବି, ଏ କ'ଣ ଆକ୍ସିଡେଣ୍ଟ୍?" ଅହଲ୍ୟା ଆଉ ଅପେକ୍ଷା ନ କରି ବ୍ୟସ୍ତ ହେଇ କଥାଟି ପଚାରି ଦେଲେ।

"ମାଇଁ, ତୁମେ କିଛି ବୁଝି ପାରୁନ?" ଅହଲ୍ୟା ଉତ୍ସୁକତା ସହ ଚାହିଁ ରହିଛନ୍ତି ରବୀନ୍ଦ୍ରକୁ। ପାଞ୍ଚ ଏକର ବାଡିଟା ମଧ୍ୟରେ ସେମାନେ ଆଗେଇ ଯାଇ କୁଆଡେ ଛପି ଗଲେଣି।

ରବୀନ୍ଦ୍ର ଅତ୍ୟନ୍ତ ବିଶ୍ୱସ୍ତତାର ସହ କହିବାକୁ ଆରମ୍ଭ କରିଛି, "ସତ କହୁଛି, ନୂଆବୋଉ ଥିଲେ ଏ ଘରର ପ୍ରାଣ, ଏ ଘରର ଲକ୍ଷ୍ମୀ। ତାଙ୍କ ଭଳି ସୁନ୍ଦରୀ, ଗୁଣବତୀ ଚାଲାକଚତୁର ଝିଅ ଏ ଗାଁରେ ଜଣେ ନାହିଁ। ଆମ ଭାଗ୍ୟ ଖରାପ। ସେମାନେ ତାଙ୍କୁ ମାରିଦେଲେ। ଏ ତିନିହେଁ ମିଶି ମାରିଦେଲେ ତାଙ୍କୁ। ତୁମେ ବିଶ୍ୱାସ କରି ପାରିବନି।"

"କ'ଣ କହୁଛ, ରବି?"

"ମାରି ନାହାନ୍ତି ତ ଆଉ କ'ଣ ହୋଇପାରେ? ହସି ହସି ଘର ଗୋଟାକର କାମ ନିଜେ କରି ଥାଆନ୍ତି ସେ। ସବୁ ଦାୟିତ୍ୱ ତାଙ୍କର। କି ସୁନ୍ଦର ତାଙ୍କ ହାତ ରାନ୍ଧଣା! ଯେ ଥରେ ଖାଇଛି ଝୁରିବ ପରା। ଏମାନେ? ବାପା, ମା', ଭାଇ? ନା- ୟାଙ୍କୁ କଂସେଇ କହିବାକୁ ହେବ।"

ଅହଲ୍ୟାଙ୍କର ଛାତିରେ ଯନ୍ତ୍ରଣା। ସବୁ ଶୁଣିବାକୁ କଷ୍ଟ ହେଉଥିଲା। ରବୀନ୍ଦ୍ର କିନ୍ତୁ ଗପି ଚାଲିଲା।

"ତୁମର ଏ ଶାନ୍ତଶିଷ୍ଟ ବଡ ନଣନ୍ଦ, ଯାଉଣୁ ଆସୁଣୁ ନୂଆବୋଉଙ୍କୁ ଉଲୁଗୁଣା ଦେଉଥିବେ। ଏତେ ସୁନ୍ଦର ରାନ୍ଧଣାକୁ ପ୍ରତିଦିନ ବାରିବାକୁ ତାଙ୍କୁ ଖୁବ୍ ଆନନ୍ଦ ଲାଗୁ ଥିଲା। ଅଧେ ଦିନ ପୁଣି ଓପାସ। କଥା କ'ଣ ନା ବୋହୂ ଖାଇବାକୁ ଦେଉନି। କି ରାଗ, ରୁଷା! ଭାଇନା ତ ଟାଉଟରୀ କରି କେତେବେଳକେ ଘରକୁ ଫେରିବ। ଆସୁ ଆସୁ ବୋଉ ଖାଇନି ଶୁଣି ରାଗ ପଞ୍ଚମକୁ ଉଠିଯିବ। ବିଧାଏ, ଠେଲାଏ, ଚାପୁଡାଟାଏ କି କଦର୍ଯ୍ୟ ଗାଳି କାନ ଶୁଣିବନି।"

"ଅଭି ତାଙ୍କୁ ମାଡ ଦିଏ?"

"ମାଇଁ, ଏ ବା କି ମାଡ? କଥାଟା କିନ୍ତୁ ଅସହ୍ୟ। ଏଣେ ପୁଣି ଶ୍ୱଶୁର ମହାଶୟ ଅର୍ଥାତ୍ ମୋର ପରମ ପୂଜନୀୟ ପିତୃଦେବ, କୁଆଡେ ମାମଲତ

କରି ବୁଲି ବୁଲି ଘରକୁ ଫେରିବେ ଦିନ ଦୁଇଟା ବାଜିଲେ। ସେତେବେଳକୁ ଏ ବିଚାରୀ ନୂଆବୋଉ ରନ୍ଧାରନ୍ଧି କରି ଚୂଲିମୁଣ୍ଡରେ ସବୁ ଘୋଡେଇ ରଖି ଅପେକ୍ଷା କରିଥିବେ। ଶ୍ୱଶୁର ଫେରିଲାବେଳକୁ ତାଙ୍କ ହାତକୁ ବଢାଇଦେବେ ମାଇପାଗିନା, ଗାମୁଛା, ବାଲଟିରେ ବାଲଟିଏ ଗରମ ପାଣି। ଗାଧୋଇ ପୂଜାପୂଜି ସାରି ଆସିବା ବେଳକୁ ପିଡା ପାଣି ରଖି ନଅ ତିଅଣ ଛଅଭଜା ସଜେଇ ଭାତ ପରଷିବେ। ଅଥଚ ସେ କ'ଣ କରନ୍ତି ଜାଣ? ଗୋଟାଏ ଗୋଟାଏ ଭଜା ତରକାରୀରେ ଟିପ ମାରି ଚାଖି ଚିତ୍କାର କରି ସେଇ ଗିନା, ଥାଳିଆ ଫୋପାଡିବେ ଅଗଣାକୁ। ନୂଆବୋଉଙ୍କ ନନା, ବୋଉ ସପ୍ତପୁରୁଷଙ୍କୁ ଶୋଧି ଚାଲିଥିବେ ସେ।''

''ବୋହୂଟିର ପୁଣି ଭୁଲ୍ କୋଉଠି?''

''ଭୁଲ୍ ପୁଣି କ'ଣ ବୋଲି ପଚାରୁଛ? ଏ ସବୁ ନୀରବରେ ସହିଯିବାଟା ହିଁ ତାଙ୍କ ଭୁଲ। ଶେଷରେ ସେଇ ତାଙ୍କର କାଳ ହେଲା। ସବୁ କଥା ସେଇ ଦବା ନବା ନେଇ। ସୁନ୍ଦରୀ ଝିଅ ଦେଖି ବୋହୂ କରିବାକୁ ରାଜି ହେଲେ। ଝିଅର ବାପା ଯେ ଦରିଦ୍ର, ପ୍ରାଇମେରୀ ସ୍କୁଲ ଶିକ୍ଷକଟିଏ, ସାତ ଝିଅର ବାପା, ଯା' କ'ଣ ଏମାନେ ଜାଣି ନ ଥିଲେ? କିଏ ତାଙ୍କର ଏ ଯେଉଁ ଯୋଗ୍ୟର ପୁତ୍ରକୁ ଏଭଳି ଝିଅ ଦେଇ ଥାଆନ୍ତା? ସେ ସବୁ ବହୁତ କଥା, ମାଉଁ।

ସେମାନେ ତଥାପି ସାଧ୍ୟମତେ ଦବାନବା କରିଥିଲେ ଜମି କିଛି ବିକି। କିନ୍ତୁ ବର୍ଷସାରା ପୂନିଅ ପରବକୁ ଭାରଥୋର, ନୂଆଲୁଗା, ସେ ସବୁତ ପୁଣି ଦାଶଚୌଧୁରୀ ପରିବାରର ମନଲାଖି ହେବା ଦରକାର!''

''ଥାଉ ରବି, ଆଉ ମୋତେ କୁହନା।'' ଅହଲ୍ୟା ଅଧିକ ସମୟ ଶୁଣିପାରୁ ନ ଥିଲେ।

ରବୀନ୍ଦ୍ର ଚୁପ୍ ରହିଗଲା କିଛି ସମୟ। ପୁଣି ଗପିବାକୁ ଆରମ୍ଭ କଲା, ''କେହି କେବେ ପଦେ ସ୍ନେହରେ କଥାଟିଏ କହିଛନ୍ତି ତାଙ୍କୁ? ଆଉ ଭାଇନା? ସବୁ ତ ଶୁଣିଲ। ସହାନୁଭୂତି ପାଇବା ପାଇଁ ପଦଟିଏ କଥା ତାଙ୍କଠାରୁ କେବେ ଶୁଣିଥିଲେ ସେ ବଞ୍ଚି ରହି ଥାଆନ୍ତେ, ମାଉଁ। ନା, ତା' ହେଲା ନାହିଁ। ସବୁ ବିଷୟ ଅସହ୍ୟ ହେବାରୁ ଦିନେ ସେଇ ପଙ୍ଖାରୁ ଝୁଲି ପଡିଲେ ନୂଆବୋଉ। ପେଟରେ ପିଲା ଥିଲା।''

ସେମାନେ ସମସ୍ତେ ଗାଡିରେ ବସି ସାରିଲେଣି । ଅପେକ୍ଷା କେବଳ ଅହଲ୍ୟାଙ୍କୁ । ଗୌତମ ଗାଡି ବାହାରେ ଠିଆ ହୋଇ କର୍ତ୍ତାଙ୍କ ସହ କଥାବାର୍ତ୍ତା କରୁଛନ୍ତି । ଅହଲ୍ୟା ତରତରରେ ଜିପ୍ ପଛକୁ ଉଠିଗଲେ, କାହାଠାରୁ ବିଦାୟ ନେବା ଆବଶ୍ୟକ ମଣିଲେନି । କାନରେ ବାଜିଲା କର୍ତ୍ତାଙ୍କର ଶେଷ କଥା କେତେପଦ । ଅକସ୍ମାତ ଚନ୍ଦ୍ର ଉଇଁବା ଭଳି ମୁହଁରେ ତାଙ୍କର ହସର ଝଲକ ।

"ତୁମେ ଆସିଲ ଭଲ ହେଲା, ସବୁ କଥା ତ ବୁଝିଲ । ରବିର ଚାକିରି, ଅଭିର ଉଚ୍ଚ ଆଶା, ଏ ସବୁ ବିଷୟ ତୁମକୁ ଲାଗିଲା । ଜ୍ଞାନୀ ଗୁଣୀ ଲୋକ ତୁମେ । ଅଧିକ ଆଉ କ'ଣ ବୁଝେଇବି, ଗୌତମବାବୁ ।"

ଆଉ ରବି ?

ଜିପ୍ ଷ୍ଟାର୍ଟ ହେବା ପରେ ମଧ୍ୟ ଧାଇଁ ଯାଇ ଅହଲ୍ୟାଙ୍କୁ କହି ପକାଇଲା, "ମୋତେ ଭୁଲିବନି, ମାଇଁ । ମୁଁ ଚିଠି ଦେବି ଯେ ।"

ଅହଲ୍ୟା ହଁ ମାରିଲେ । ଦୃଷ୍ଟି ନିବଦ୍ଧ ହୋଇଥିଲା ଚଉପାଢୀ ପାଖ ବାହାର ବାରଣ୍ଡାରେ ଥିବା ସବାରୀଟି ପ୍ରତି । ସେ ଆଉ ସେଇ ପୁରୁଣା ସେଦିନର ଜୀର୍ଣ୍ଣ ଅବସ୍ଥାରେ ନ ଥିଲା । ସୁସଜ୍ଜିତ ହୋଇ ସବାରୀଟି ତଳେ ରଖା ଯାଇଥିଲା କାହା ଅପେକ୍ଷାରେ । ଗଉଡମାନେ ବେଶ ପୋଷାକ ପିନ୍ଧି ପ୍ରସ୍ତୁତ ହୋଇ ରହିଥିଲେ ।

ଜିପ୍ ଆଗେଇ ଯିବା ପୂର୍ବରୁ ଗଉଡମାନେ ତାକୁ କାନ୍ଧେଇ ସାରିଥିଲେ । ଫୁଲ ଭଳି କୋମଳ ସେଇ ଅନିନ୍ଦ୍ୟା ସୁନ୍ଦରୀ ବୋହୂଟି ଅଷ୍ଟଅଳଙ୍କାର ମଣ୍ଡି ହୋଇ, ପାଟ ଶାଢ଼ି, ନାଲି ଜରିପକା ଓଢଣୀ ମଧ୍ୟରୁ ତା'ର ଚନ୍ଦ୍ରନିନ୍ଦିତ ମୁଖଟି ଦେଖାଇ ଅହଲ୍ୟାଙ୍କୁ ଚାହିଁ ଟିକିଏ ହସି ଦେଉଥିଲା ।

ସବାରୀ ଚାଲିଛି । ଜିପ୍‌ର ଗତି ସହ ତାଳ ଦେଇ ଗଉଡମାନେ ଧାଇଁଛନ୍ତି । ଅହଲ୍ୟା ଆଖି ଘଷିଦେଇ ବାରମ୍ବାର ଚାହୁଁଛନ୍ତି ସେଇ ଦିଗକୁ, ସବାରୀ ପାଖେଇ ଆସୁଛି । ବୋହୂଟି କଅଁଳ ସ୍ୱରରେ ତାକୁ ହିଁ କହୁଛି, "ମୁଁ ଆଉ ମରି ପାରିବିନି ମା । ଉଁ ହୁଁ ସବୁଦିନେ କ'ଣ ମରୁଥିବି ?" ☐☐

ସୁଚରିତା, ଅଗଷ୍ଟ, ୧୯୮୯

# ହନିମୁନ୍

ସମୁଦ୍ର ବାଲିରେ ଚାଲି ଚାଲି, ପାହାଡ ଚଢ଼ି ଚଢ଼ି କ୍ଲାନ୍ତ ସୁଷମା। ବଡ ପଥର ଖଣ୍ଡ ଉପରେ ଥକାମାରି ବସି ଅଳ୍ପଦୂରରେ ଆଗେଇ ଯାଉଥିବା ନରେଶଙ୍କୁ ଚାହିଁ ରହିଲେ ସେ। ସେଇଆଡେ ଚାହିଁ ନିଜକୁ ନିଜେ ସାନ୍ତ୍ୱନା ଦେବାଭଳି କହିଲେ, ଯାଆନ୍ତୁ, କାହିଁକି ଡାକିବି? ସବୁବେଳେ ସେ ଜୋର୍‌ରେ ଚାଲନ୍ତି। ମୁଁ ତ ବେଳରୁ ପାରେନା, ଏବେ ଏ ବଅସରେ ! ହେଇଥାନ୍ତି ବା ତନୁପାତଳୀ, ନବୀନବୟସୀ ବାଳା। ଘଡିଏ ବସିଯାଏ ମ... ମତେ କିଏ ଉଠେଇନବ? ସେ ଭୟ ନାହିଁ। କୋଉ ସୁନା ମଣ୍ଡି ହେଇଚି କି? ହାତରେ, କାନରେ, ବେକରେ ସେଇ କାଚ, ମାଳି, ପଥର। ହାତବ୍ୟାଗ୍ ଖଣ୍ଡିକ ତ ରଖି ଆସିଲି ସୁଟ୍‌କେଶ୍‌ରେ ତାଲା ଦେଇ। ତାଙ୍କ ବେଖାତିରିଆ କଥାରୁ ମତେ କ'ଣ ମିଳିବ? ଗଲେ ଗଲା। ନୂଆ ଯାଗା, କେତେ ବାଗର ମଣିଷ। କାହା ମନ ଭିତରର କଥା କିଏ ଜାଣିବ? ନିଜ ସଂପତ୍ତିଟିକ ସାଇତି ରଖିଲି। ଟଙ୍କା ପଇସା କି ଦରକାର? ମୋର ପାନ ଖଣ୍ଡେ ତ ମିଳୁନାହିଁ ଏଠି। ସେ ତ ସାଙ୍ଗରେ ଅଛନ୍ତି। ଦେବେନି କି ଯାହା ଯୋଉଠି ଦରକାର ହବ! କ'ଣଟାଏ କେତେବେଳେ ମନ ଡ଼ାକିବ! ସେ ଭଲା କୋଉ ପାଖରେ ଠିଆ ହୋଇଥିବେ! ହେଇତ ଚିନାବାଦାମବାଲାଠୁଁ କିଣି ବସିଲେଣି। ଚିନାବାଦାମ ଛଡେଇ ଖାଇ ମତେ ଚାହିଁ

ହସୁଛନ୍ତି। କହୁଛନ୍ତି, ଟାୟାର୍ଡ଼? ହଉ, ଧୀରେ ଧୀରେ ଆସ।

ତରତର ହେଲେ ଏ ସ୍ଥୂଳକାୟ ମାଇପିଟା ବାଲିରେ ଚିତ୍‌ପଟାଙ୍ଗ୍ ହେଇ ପଡିଯିବ ଯେ। ପଥରରେ ମୁଣ୍ଡ, ଗୋଡ, ହାତ ଖଣ୍ଡିଆ କରି ଲୋକହସା ହବା କଥା।

ତାଙ୍କର ମୋ କଥା ହେଜ ଥିଲେ ତ ପାନମସଲା ପୁଡିଆଟାଏ କିଣି ଥାଆନ୍ତେ। ମା' ଲୋ ମା', ଏଠିକା ପାନ କିଏ ପାଟିରେ ଦବ? ଯାହା ଘରୁ ବାହାରିବା ବେଳେ ଆଣିଥିଲି ଏତକ ଦିନ ଫାଳେ ଚଉଠେ ଖାଇ ସାରିଲି। ଘର ଛାଡିବାର ଆଠଦିନ ହେଲା। ଆଉ କେତେଟା ଦିନ? ତାଙ୍କର ଚିନ୍ତା ନା ଦକ? ବୁଲାଯାଗା ବୁଲା ହେଲାଣି। ଶେଷରେ ଏଇଠି ଡେରା ପଡିଲା। ତିନିଦିନ ହେଲା ଏ ସମୁଦ୍ରକୂଳିଆ ହୋଟେଲ୍‌ରେ ମୁଠାମୁଠା ପଇସା ଗଣା ହଉଚି। କ'ଣ ନା 'ସିନିକ୍‌ଭିଉ' ଦେଖିବା। ମୁଁ ପରା ଗାଁରେ ବଢିଛି। ଆମ ଗାଁ ନଈ ପାହାଡ, ଆମ୍ବତୋଟା, ତାଳ, ନଡିଆବଣ, ଗାଁ ଠାକୁରାଣୀ। ଆହା, ଅପୂର୍ବ ମୋ ଯାଗା। ଚାଲୁନ ଦେଖିବ। ଚାକିରି କାଳରେ ଗସ୍ତ କରି ଏତେଆଡ ବୁଲିଲ, କୋଉ ଅପନ୍ତରାକୁ ନଯାଇଛ ଅବା? ମନ ଶାନ୍ତ ହେଲା ନାହିଁ?

କେତେ କରି କହିଲି, ଯାହା କରୁଛ କର। ସନ୍ଧ୍ୟାବେଳଟାରେ କିନ୍ତୁ ମନ୍ଦିରରେ ବସିବା। ନାମ, ଭଜନ କରିବା। ଯିଏ ଆମକୁ ସଂସାର ଦେଲା, ପରିବାର ଦେଲା, ଆମ ପିଲାଙ୍କୁ ଏତେରୁ ଏତେ କଲା ସେ ପରା ସର୍ବମୟକର୍ତ୍ତା। ତାଙ୍କୁ ପାଶୋରିଲେ ଘୋର ପାପ।

-ଏଠି ମନ୍ଦିର ନାହିଁ। ଠାକୁର ତ ତୁମ ହୃଦୟରେ। କିଏ ମନା କଲା ଧ୍ୟାନ କରିବାକୁ? ମନଭରି ପାର୍ଥନା କର।

ଦେଖ ତାଙ୍କ ହସ। କହୁଛନ୍ତି, ଏଠି ଭଲ ଲାଗୁନାହିଁ? ଗିଲାକ୍ସ, ସୁଷମା। ଆସ, ରେଷ୍ଟୁରାଣ୍ଟ୍‌ରେ କଫି ପିଇ ଫେରିବା।

ମୁଁ ତାଙ୍କୁ ଚାହିଁଲି। କଫି ପିଇବାକୁ କିଏ ମନା କଲା? କିନ୍ତୁ ସେ ଚପ୍, କଟ୍‌ଲେଟ୍ ଖାଇ ମୁଁ ହଜମ କରିପାରିବିନି ମ। ତୁମେ ଖାଅ।

ଘରେ ଯେତେ ଠା ରାନ୍ଧି ଥାଅ, ଭଲମନ୍ଦ ସାଇତି ରଖ। ଖାଇବାରେ ବେଳ କାହିଁ?

କାମ ଯେ କାମ, ଅଫିସରେ ଖଟି ଖଟି ନୟାନ୍ତ। ଗସ୍ତ କରିବାକୁ ଯାଇ

ବାହାରେ ଖାଇବା ଶୋଇବାରେ ଠିକଣା ନଥାଏ ।

କି ଜୀବନ ସେ ? ଥକି ଯାଇ ବସିଥିବେ ଟି.ଭି ପାଖରେ । ପାଞ୍ଚ ପଦରେ ପଦେ ଉତ୍ତର ନାହିଁ । ରୋଷେଇ ସରିଲେ ଗଣ୍ଡାଏ ଖାଇଲେ ବିଛଣା ଧରିଲେ ସକାଳ । କହିଲେ କହିବେ ମୁଁ ପର। ସରକାରଙ୍କ ମୂଲିଆ । ବୁଝିଲ, ମଣିଷ ଭାବେ ପ୍ରକାରେ, ଜୀବନ ଚାଲେ ଆଉ ପ୍ରକାରେ ।

ବାହାଘର ପରେ ପରେ ପାଖରେ ବସେଇ କହନ୍ତି, ଚାକିରି ଛାଡି ଦେବି ପଛକେ ତୁମକୁ ନେଇ ଦାର୍ଜିଲିଂରେ ମାସେ ବସିବି ।

ସୁଷମା ଲାଜେଇ ଯାଆନ୍ତି । ମୁହଁ ନ ଖୋଲିଲେ ବି ମନେ ମନେ କହନ୍ତି, ଚାଲୁନ ? ବୁଲିବାକୁ କିଏ ନ ଚାହେଁ ? ମୁଁ ତ ଗାଁ ଝିଅ । କ'ଣ ଦେଖିଛି କି ? ସେଇ ପାଖରେ କଲେଜ ନଖୋଲିଥିଲେ ନନା ପାଠପଢା ବି ବନ୍ଦ କରିଦେଇଥାନ୍ତେ ।

ନରେଶ ହତୋତ୍ସାହ ନହେଇ ଛୁଟୀ ପାଇଁ କମ୍ ଚେଷ୍ଟା କରି ନାହାଁନ୍ତି । ଛୁଟୀ ମିଳୁ ମିଳୁ କେତେ ମାସ ଚାଲିଗଲା । ସାନ ଭଉଣୀ ବାହାଘର, ନନାଙ୍କ ଦେହ ଖରାପ । ସେ ଛୁଟୀ ସେଇ କାମକୁ ପାଇଲା । ଉପରିସ୍ଥ ହାକିମ ଭଲ ଲୋକ ଥିଲେ । ତାଙ୍କ ଭାଗ୍ୟକୁ ସେ ବି ବଦଳି ହେଇ ଦୂରକୁ ଗଲେ । ଆହାଃ ଲୋକଟି ନୂଆ ଜୀବନକୁ ଉପଭୋଗ କରିବାକୁ କମ୍ ଚେଷ୍ଟା କରିନାହାଁନ୍ତି ।

ଛୁଟୀ ମିଳିଲା । ଟ୍ରେନ୍‌ରେ ଟିକଟ ରିଜର୍ଭ ହେଲା । ଅଥଚ ମୁହଁ ଶୁଖେଇ ଅଫିସରୁ ଫେରିଲେ ନରେଶ । ସେ କ'ଣ ଏତେ କଥା ଜାଣିଥିଲେ । ପ୍ରଥମ ପିଲା ବିବେକ ଜନ୍ମ ହବାର ଥାଏ । ଏ ତ ଖୁସିର କଥା । ଅଥଚ ସୁଷମାଙ୍କ ବୋଉ ମନାକରି ପଠେଇଲେ ଏ ବେଳରେ ଗାଡି ମଟର ଚଢି ଏତେ ବୁଲାଚଲା ଠିକ୍ ନୁହେଁ ।

ସୁଷମାଙ୍କର ଇଚ୍ଛା, ଅନିଚ୍ଛା କିଏ ବୁଝୁଛି ? ସବୁଥିରେ ତାଙ୍କର ଖୁସି । ସେଇଘର କାମରେ ସେ ଲାଗିଥାନ୍ତି ଦିନରାତି । ମନ ଦୁଃଖ ହୁଏ ନରେଶଙ୍କ ମନ ଭାଙ୍ଗିଯିବା ଦେଖି ।

ବର୍ଷେ, ଦେଢବର୍ଷ ତଫାତ୍‌ରେ ଚାରୋଟି ପିଲା । ସେମାନଙ୍କ ଅଳି, ଅର୍ଦ୍ଦଳି, ଆଜି ଜଣେ ସୁସ୍ଥ ତ କାଲି ଆଉ ଜଣେ ଜର, ଥଣ୍ଡା ଭୋଗୁଥିବ ।

ଥରେ ଅଧେ ଗସ୍ତରେ ଯିବାବେଳେ ପିଲାଙ୍କୁ ଧରି ବୁଲିବାକୁ ଗଲେ ମନ ମାନିଯାଏ ସୁଷମାଙ୍କର ।

କି ହଇରାଣ ! ଏ ଜଞ୍ଜାଳ ନେଇ ବାହାରେ କି ସୁଖ ? ମତେ ଆଉ ଡାକିବନି ତ। ଏମାନେ ବଡ ନ ହେବା ଯାଏ ତୁମେ ମୋ ବୁଲାବୁଲିର ନାଁ ଉଠେଇବନି !

ସତେ ତ ଏ ସମୟ କେତେ ଘଡିକେ କୁଆଡେ ଗଲା !

ବିବେକ, ବନିତା ଦୁଇ ପୁଅଝିଅଙ୍କ ପରେ ଆସିଲେ ଚାଣକ୍ୟ, ସୁଜାତା।

ତାଙ୍କୁ ମଣିଷ କରିବାରେ ଲାଗିଗଲେ ସେ ଦୁହେଁ। ସେମାନେ ଭଲ ପଢିବେ, ପିଲାଙ୍କ ଗୀତ, ନାଚ, ଖେଳ, ପାଠ, ବର୍ଷକୁ ବର୍ଷ ବହୁପ୍ରକାର ପରୀକ୍ଷା, ସବୁଥିରେ ଭାଗୀଦାର ବାପା, ମା' ଉଭୟ।

ତିନି ପିଲାଙ୍କ ପାଠ ଶେଷ ହେଲା। ବିବେକ ବିଦେଶରେ ଇଂଜିନିୟରିଂରେ ବିଶେଷ ଯୋଗ୍ୟତା ନେଇ ଫେରି ଆସି ବମ୍ବେରେ ଭଲ ଫାର୍ମରେ ଚାକିରି ପାଇଲା। ସାନ ଚାଣକ୍ୟର ପାଠ ଶେଷ ହୋଇ ଆସୁଚି। ପିଲାମାନଙ୍କ ବାହାଘର, ନରେଶଙ୍କ ଚାକିରୀରୁ ଅବସର ନେବା ପରେ ଏସବୁ ଭିତରେ ଏଇ ବୁଲାବୁଲି କଥାଟା ସୁଷମା ମନରୁ ପାଶୋରି ଦେଇଥିଲେ। ଅଥଚ ବିବାହର ତିରିଶ ବର୍ଷ ପରେ ନରେଶ ଫେରି ଯାଉଛନ୍ତି ସେଇଦିନକୁ।

''କିହୋ, ଚାଲିପାରୁନା ? କ'ଣ ହେଲା, ଦେହ ଭଲ ଲାଗୁନି କି ?''

''ଭଲ ଅଛି। ଦେଖୁନ କି ରାସ୍ତା। ପାନ ମସଲା କିଣିଲ ?''

''ସେଗୁଡା ଖାଇଲେ ତଣ୍ଟିରେ ଯାବତୀୟ ରୋଗ। ହଉ ନିଅ, ଏ ଅନ୍ୟ ପ୍ରକାର କ'ଣ ଦେଇଛି। ଥାଉ ସେ। ପରେ ଖାଇବ। ଏଇ ବାଦାମ ନିଅ।''

ନରେଶ ବାବୁଙ୍କ ଠାରୁ ଛଡା ଚିନାବାଦାମ କିଛି ନେଇ ପାଟିରେ ପକେଇଲେ ସୁଷମା।

ହୋଟେଲ୍ ରୁମ୍ ଖୋଲି ନରେଶବାବୁ ଗାଧୁଆ ଘରେ ପଶିଲେ। ଖୁବ୍ ଶୀଘ୍ର ଲୁଗା ବଦଳେଇ ତଳକୁ ପାଦ ରଖି ଖଟ ଉପରେ ଗଡି ପଡିଲେ ସୁଷମା।

ନରେଶ ବାବୁଙ୍କୁ ଚୁଡିଦାର, ପଞ୍ଜାବୀ ସୁନ୍ଦର ମାନୁଛି। ଧୁଆଧୋଇ ହେଇ ଇସ୍ତ୍ରୀ କରା ଏଇ ଡ୍ରେସ୍ ବଦଳାଇ ସେ ପୁଣି କୁଆଡେ ବାହାରିଲେଣି।

''ତୁମେ ବାଥ୍‌ରୁମ ଯିବନି ? ଯାଅ, ଶୀଘ୍ର ବାହାରି ପଡ। ଏ କି ଲୁଗା ପିନ୍ଧିଛ ?''

"ଆଉ ଏବେ କୁଆଡେ ପୁଣି ଯିବା ?"

"ତଳକୁ ଯାଇ ଗାର୍ଡନ୍‌ରେ ବସି ଚିଲି ପନିର୍ ଦୁଇ ପ୍ଲେଟ୍ ଖାଇବା। ତା'ପରେ ଯିବା ଏଠିକା 'ଫୋକ୍ ଡ୍ୟାନ୍ସ' ଦେଖିବା ପାଖ ହୋଟେଲ୍‌ରେ।"

"ଏମିତିରେ ଟଙ୍କା ଖର୍ଚ୍ଚ କରିବ! ବୁଲି ବୁଲି ତ ଆସିଲ। ବସୁନ ଟିକିଏ ବାଲକନିରେ। ଟି.ଭି ଦେଖୁନ, ଏବେ ସିନେମା ଚାଲୁଥିବ।" ସୁଷମା ଗାଧୁଆ ଘରେ ପଶିଲେ।

ନରେଶ ବାବୁ ତାଙ୍କୁ ନୀରବରେ ଚାହିଁ ରହିଛନ୍ତି। ଗୁଣୁ ଗୁଣୁ ହୋଇ ଗାଉଥିବା ଗୀତଟିର ସ୍ୱର ହଜି ଗଲାଣି।

"ହଉ ଚାଲ, କୁଆଡେ ଯିବା। ମୁଁ ବାହାରି ସାରିଛି।" ଅଗତ୍ୟା ରାଜି ହେଲେ ସୁଷମା।

ନରେଶ ବାବୁ ରାସ୍ତାକୁ ଓହ୍ଲେଇଲେ। ସୁଷମା ଚାଲିଛନ୍ତି। ତାଙ୍କ ହାତଧରିବାକୁ ନରେଶ ବାବୁ ହାତ ବଢେଇଲେ।

"ଥାଉ ମ।" ତାଙ୍କ ହାତ ପାପୁଲିରୁ ସୁଷମା ହାତଟା ଖସେଇ ନେଲେ।

"କ'ଣ ହେଲା ? ବିରକ୍ତ ହଉଛ ?"

"ନାଇଁ ମ," ହସୁଛନ୍ତି ସୁଷମା।

"ଓହୋ ଲାଜ ଲାଗୁଛି! ଧନ୍ୟ ତୁମେ। ଦେଖ, ସେମାନେ କିପରି ଚାଲିଛନ୍ତି ? ତାଙ୍କୁ ଆଉ ଲାଜ ଲାଗୁନି ?"

କିଛି ସେ ବାକି ରଖି ନାହାଁନ୍ତି। ପ୍ରତିଟି ପିଲା ପ୍ରତିଷ୍ଠିତ। ଗାଁରେ ଚଳନୀୟ ପୈତୃକ ସଂପତ୍ତି। ସହରରେ ନିଜ ପାଇଁ ଘର ଖଣ୍ଡେ।

ସ୍ୱଳ୍ପ ସୀମିତ ଆୟରେ ଆଉ ଅଧିକା ସେ କ'ଣ କରିପାରି ଥାଆନ୍ତେ ?

"ହଇହୋ, ସେ ବାହାରଟାରେ ସେତିକି ବେଳୁ ଡିନାର୍ ଖାଇସାରି ବସିଛ !"

ସୁଷମାଙ୍କ ଡାକରେ ପ୍ରକୃତିସ୍ଥ ହେଲେ ନରେଶବାବୁ। ପୂର୍ବଭଳି ସହଜ ସ୍ୱରରେ ଡାକିଲେ, "ଆସ ଦେଖିବ, ଜହ୍ନ ରାତିର ସମୁଦ୍ର।"

"ତୁମେ ଦେଖ, ମୋତେ ନିଦ ଆସୁଛି।"

"ଚାଲ, ମୁଁ ବି ଶୋଇବି। ସକାଳୁ ଉଠି ପୁଣି ସୂର୍ଯ୍ୟୋଦୟ ଦେଖିବା।"

ନରେଶବାବୁ ବାଲକନି କବାଟ ବନ୍ଦ କରି ଖଟକୁ ଆସିଲେ।

''ଶୋଇଗଲଣି କି ?''

''ନିଦ ଭାଙ୍ଗିଗଲା। ଟିକେ କଥା କହିଦେଲି ତ।''

''ହଇହୋ, ତମ ବୟସ କେତେ ହେଲା କି ?''

''ସେ କଥା ଏ ରାତିରେ ଆମର କାହିଁକି ପଡିଛି ?'' ହସିଲେ ସୁଷମା।

''ଏଇ ପଚାଶ, ବାଉନ ହେଲା ନା ? ଓହୋ ପଚାଶ ଛୁଇଁନି। ତେବେ ତ ଆଉ ପାଞ୍ଚ, ଛଅ ବର୍ଷ ପରେ ତୁମର ବାହାଘର ହେବ।''

''ଯାହା କହନ୍ତି ରିଟାୟର୍ କଲା ପରେ ବୁଢା। ସେଇକଥା। ମୁଣ୍ଡ ବାଚାଳ ଧଇଲାଣି।''

''ଏ ଅଠାବନ ବର୍ଷରେ ମୁଁ ବୁଢା ? ସତୁରି ବର୍ଷରେ ଲୋକେ ବାହା ହଉଚନ୍ତି। ମତେ ତୁମେ ବୁଢା କହୁଚ !''

''ହେଲା ବାବା, ତୁମେ ଟୋକା !''

''ଆଜିକା ଖବରକାଗଜ ଦେଖିଛ ? ଜଣେ ଚଳଚ୍ଚିତ୍ର ଅଭିନେତ୍ରୀ ଚଉବନବର୍ଷ ବୟସରେ ବିବାହ କରି ତାଙ୍କ ସ୍ୱାମୀଙ୍କ ସହ ବିଦେଶ ଭ୍ରମଣରେ ବାହାରିଛନ୍ତି।''

''ସେଥିରୁ ଆମକୁ କ'ଣ ମିଳିବ ? ଶୋଇଲ ସଅଳ। ରାତି ନ ପାହୁଣୁ ମୋ ନିଦ ଭାଙ୍ଗିବ ତୁମେ।''

''ସୁଷମା, ଛାଡ ସେ କଥା। ତୁମ, ମୋର ଯେ ବୟସ ବଢି ଚାଲିଛି ସେ କଥାରେ ମୁଁ ଏକ ମତ। କିନ୍ତୁ ସବୁ ଖୁସି କଥାରେ ଏ ବୟସ - ସଚେତନ ମନ ମୋ ନୀତି ବିରୁଦ୍ଧ।''

କାହାକୁ ଏ କଥା କହୁଛନ୍ତି ନରେଶ ? ସୁଷମା ତ କେତେବେଳୁ ଶୋଇଲେଣି।

ନରେଶ ଖଟରୁ ଉଠି ଆସିଲେ। ବାଲକନିର କବାଟ ଖୋଲି ପୁଣି ସମୁଦ୍ରକୁ ଅନେଇ ଠିଆହେଲେ। ଦୂରରୁ ଆସୁଥିବା ଜାହାଜର ଆଲୋକ ଦେଖି ସେଇଆଡେ ସେ ଚାହିଁ ରହିଲେ। ଟିକିଏ ସମୟ ପରେ ଚେୟାର୍‌ରେ ଢ଼ଳି ବସି ଗୋଟାଏ ହିନ୍ଦି ଗଜଲ୍‌ର ସ୍ୱର ମନରେ ଗୁଣୁଗୁଣୁ ହେଲେ ସେ।

''ଶୁଣୁଛ, ଚା' ଦେଇଗଲାଣି ? ଆଜି କି ନିଦ କି ? ମୁଁ ପରା ଦାନ୍ତ ଘଷି ସାରିଲିଣି।''

ସୁଷମାଙ୍କ କଥାରେ ବିଛଣାରେ ଉଠିବସିଲେ ନରେଶ୍। ଗାଧୁଆ ଘରେ ପଶି ମିନିଟିକ ମଧ୍ୟରେ ପୁଣି ଆସି ଖଟରେ ବସିଲେ ସେ।

"ବହୁତ ଇଚ୍ଛାଥିଲା, ବାହାଘର ପରେ ପରେ ମାସଟିଏ ଯାଇ ତୁମେ, ମୁଁ ଦାର୍ଜିଲିଂରେ ବସିବା। ମୋର ଯେଉଁ ଚାକିରି ସେଥିରେ ଆଉ କ'ଣ ହେବ କୁହ ?"

"ଏତେ ବଡ ଅଫିସର ହୋଇଥିଲ। ଘର, ଗାଡି, ଡ୍ରାଇଭର, ପିଅନ୍, ମାଳୀ। ସରକାର ତୁମକୁ ସବୁ ସୁବିଧା ଦେଇଥିଲେ। ସେଇଥିରେ ଏ ପର୍ଯ୍ୟନ୍ତ ସୁଖରେ ଚଳିଲେ ଆମେ। ଝିଅ, ପିଲା..."

"କ'ଣ କହିଲ, ସୁଖରେ ?" ଅଧାକଥାରୁ ପଚାରିଲେ ନରେଶ। "ମୁଲିଆଟିଏ ମୂଲ ଲାଗି ଖୁସିରେ ଚଳୁନି କି ? ଇଏ ପୁଣି ଚଳିବା !"

"ହଉ, ତୁମେ ବୁଲିବ ଚାହୁଁଥିଲ। ଏବେ ବୁଲିବା। କ'ଣ ହେଇଛି କି ?"

"ଖୁବ୍ ଭଲ। ସେଇକଥା ମୁଁ କହୁଛି। ଏ ମାସଟିରେ ଆମର ଭ୍ରମଣଯୋଗ।"

"ଦେଖ ରାଗିବନି। ଗୋଟିଏ କଥା କହିବି। କେତେ ଲୋକ ଯାଉଛନ୍ତି ତୀର୍ଥଗାଡିରେ। ଭାରି ସୁବିଧା। ଶୁଣୁଛି ଚତୁର୍ଧାମ ଭଲରେ ବୁଲେଇ ଆଣି ପୁରୀରେ ଛାଡୁଛି। ଏ କି ଭାଗ୍ୟର କଥା କୁହତ ? କେତେ ଟଙ୍କା ସାରୁଛ। ଥରେ ଚାଲନା। ମୁଁ ପରା ନିତି ସ୍ୱପ୍ନ ଦେଖୁଛି କେତେ ଠାକୁର, ଠାକୁରାଣୀଙ୍କୁ। ନଇରେ ମୁଣ୍ଡ ଧୋଇ ଗାଧୋଇ ପିନ୍ଧିଛି ନାଲି ଧଡିଆ ମଠାଶାଢୀ। ହାତରେ ଚାଙ୍ଗୁଡୀରେ ଫୁଲ, ଧୂପ, ନୈବେଦ୍ୟ। ମୁଁ ବତୀ ଜଳେଇ ଆଳତି କରୁଚି। ଆହା ! କି ମଧୁର ସେ ସ୍ୱପ୍ନ।"

ନରେଶ୍ ଉତ୍ତର ଦେଲେନି। ଚା' କପ୍ ଧରି ମୁହଁରେ ଲଗେଇଲେ। ଇଂରେଜୀ ଖବର କାଗଜରେ 'ହେଡ୍‌ଲାଇନ୍' ସବୁ ପଢିବାରେ ମନଦେଲେ।

ପୁଣି ସୂର୍ଯ୍ୟୋଦୟ ଦେଖିବାକୁ ତରତରରେ ବାହାରି ପଡିଲେ ସମୁଦ୍ରକୂଳକୁ।

ଇଚ୍ଛା ନଥିବା ଭଳି ତାଙ୍କୁ ହିଁ ଅନୁସରଣ କଲେ ସୁଷମା। ତିନିଦିନ ହେଲା ଦେଖୁଛନ୍ତି ସେଇ ସମୁଦ୍ର, ତହିଁରେ ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ।

କେତେ ଚଢିବେ ପାହାଡ ? କେତେ ଦେଖିବେ ଆକାଶରେ ଘଡିକି ଘଡି ବଦଳୁଥିବା ରଙ୍ଗ !! କ'ଣ ଥାଏ ଏ ଦେଖିବାରେ ?

"ମୋ ହାତଧରି ଚାଲ, ପଡିଯିବ କୋଉଠି।"

"ମୁଁ କ'ଣ ପିଲାଟିଏ ହୋଇଛି ?"

ପ୍ରତିଦିନ ନୂଆ ନୂଆ ହୋଟେଲରେ ବସି ସ୍ୱାଦିଷ୍ଟ ଖାଦ୍ୟ ବରାଦ ଦେବା,

ରାତି ଅନିଦ୍ରା ହୋଇ ବସି ବସି ଗପିବା....

ଖାଇବାରେ ପୁଣି ଏତେ ଆନନ୍ଦ! ଘରେ ତ ଦିନେ ବି କିଛି ବରାଦ୍ କରିବନି। ଏ ହୋଟେଲ୍‌ରେ ପୁଣି କି ଖାଇବା ଏ? ଖାଦ୍ୟ ନୁହଁ ପଇସା ଗିଳୁଛୁ ଆମେ।

"ବହୁତ ଦିନରୁ ତୁମେ ସିନେମା ଦେଖିନ। ଆଜି ଏଠିକା ସିନେମା ହଲ୍‌ରେ ଶୁଣୁଛି ଭଲ ଫିଲ୍ମ ଚାଲୁଛି। ବ୍ରେକ୍‌ଫାଷ୍ଟ ପରେ ବାହାରି ପଡିବା। ଫିଲ୍ମ ସରିଲେ 'ୱେଭ୍‌ସ ଏଣ୍ଡ୍ ୱେଭ୍‌ସ'ରେ ଭଲ ଲଞ୍ଚ୍ ଖୁଆଇବି ତୁମକୁ।"

ପ୍ରତିଟି ବିଷୟରେ ଏତେ ଆଗ୍ରହ ଯାଙ୍କର। ହସୁଛନ୍ତି ସୁଷମା।

"ହଇହୋ କହିବ ତ ସିନେମା ଯିବାକୁ ତୁମର ଇଚ୍ଛା। ତା'ପରେ ଆସି ସେ ଦାମିକା ହୋଟେଲରେ ବସି ଖାଇବାର ବରାଦ। କ'ଣ କୁହ ତାକୁ! କଣ୍ଟିନେଣ୍ଟାଲ ମେନୁ! ସୁପ୍, ଫିସ୍‌ଫ୍ରାଏ, ସିଜ୍‌ଲର୍ସ... କି ଯେ ଖାଦ୍ୟ! ନାଁ ସବୁ କାହିଁରେ କ'ଣ? କୋଉଠି କ'ଣ ଭାତ, ସନ୍ତୁଳା, ମାଛଝୋଳ ମିଳେନି ଏଠି? ଘରେ ସେ ଖାଇବାରେ କି ତୃପ୍ତି! ଥାଉ, ତୁମକୁ କହିବିନି କିଛି।"

"ବୁଝିଲ ସୁଷମା, ଏମିତି ସୁନ୍ଦର ଯାଗାରେ ବୁଲିଲେ ସ୍ୱାସ୍ଥ୍ୟ ଭଲ ରହେ। ତୁମେ ଖୁସି ତ?"

"ସେ କଥା କାହିଁକି ପଚାରୁଛ? ମତେ ବେଶ୍ ଭଲ ଲାଗୁଛି। କାଲି ଏଠୁ ଯିବା ପରା।"

"ଏଠୁ ଯିବା ବାଙ୍ଗାଲୋର, ମାଡ୍ରାସ।"

"ଭଲ ହେଲା। କେତେ ଦିନ ହେବ ଘରଛାଡି ଆସିଛନ୍ତି।"

"ଧେତ୍ ଯେ ଘରକୁ ବାହାରିଲାଣି। କିହୋ ଦେଖିବାକୁ ତ କାହିଁ କାହିଁ ଯାଗାମାନ ଅଛି। କ'ଣ ଦେଖିଲ ତୁମେ? ଖଡା, କଖାରୁ, କଞ୍ଚାଲଙ୍କାର ବଗିଚା, ପଂଝାଏ ଗାଈଗୋରୁର ଜଂଜାଳ ସେଠି। ସେଥିପାଇଁ ଆମର ଚିନ୍ତା ଲାଗିଛି ଘରକୁ ଯିବାକୁ!"

ସବୁ ସୁନ୍ଦର ବିଷୟ ଅଡୁଆ ସୂତା ହେଲା ଭଳି ମନଟା କିପରି ଅସ୍ଥିର ହୋଇଗଲା।

ସେଇଦିନ ସନ୍ଧ୍ୟାରେ ଶୀଘ୍ର ଫେରି ଆସି ରାତି ଖାଇବା ଶେଷ ପରେ ବାଲକନିରେ ବସିଥିଲେ ସେ ଦୁହେଁ। ସକାଳ ବସ୍‌ରେ ଫେରିବାକୁ ହେବ।

ତେଣୁ ଶୀଘ୍ର ଶୋଇବା କଥା ମନେ ପକାଇ ଦେଉଥିଲେ ସୁଷମା ।

ନରେଶ ବିଛଣାରେ ଶୋଇ ଶୋଇ କାଚ ଝରକା ସେପାଖର ଆକାଶକୁ ଚାହିଁଥିଲେ । କ'ଣ ମନେ ପଡିଯିବା ଭଳି ଡାକିଲେ, 'ସୁଷମା, ପାଖକୁ ଘୁଞ୍ଚିଆସ । ବାଙ୍ଗାଲୋର ଯାଇଥିଲି ମୁଁ କଲେଜରେ ପଢିବାବେଳେ । ଉଦ୍ୟାନ ସହର, ତୁମକୁ ନେଇ ବୁଲିବାକୁ କୋଉଦିନରୁ ଇଚ୍ଛା ମୋର । ମହୀଶୂର, ବୃନ୍ଦାବନ ଗାର୍ଡେନ ସବୁ ବୁଲିବା । କେବେ ତୁମ ମନଲାଖି ଦାମୀ ସିଲ୍କ ଶାଢ଼ି ଖଣ୍ଡେ ଆଣିପାରିନି । ସେଇଠି କିଣିବା ଏଥର । ଶୁଣୁଚ ? ନିଦ ହୋଇଗଲା ନା କ'ଣ ?

''ନା, କୁହ ।''

''ଏସବୁ ଦେଖିଲେ ତୁମେ ସ୍ୱର୍ଗର କଳ୍ପନା କରିବ ।''

''ହଇହୋ, ମାଡ୍ରାସ ଯିବଟି ? କ'ଣ ଭାବୁଥିଲି କି ଆମ ଜିତାକୁ ତ ବାସନକୁସନ ଭଲ ଦେଇ ନାହାଁନ୍ତି । ଷ୍ଟେନ୍‌ଲେସ୍ ଷ୍ଟିଲ୍‌ର ଭଲ ବାସନ ସେଟ୍‌ଟିଏ ତା'ପାଇଁ କିଣି ନେଲେ ହୁଅନ୍ତାନି ? କିଣିବ ତ ବଡ ବନି ପାଇଁ ଦାମୀ ଶାଢ଼ି ଖଣ୍ଡେ । ତୁମେ ଏସବୁ ହିସାବ କରିନ । ବୋହୂ, ଦୁଇଝିଅଙ୍କର ଶାଢ଼ି । ଅବଶ୍ୟ ଜିତା ପାଇଁ ଶାଢ଼ି ନ ନେଇ ସିଲ୍କ ଡ୍ରେସ୍ ନେଲେ ଚଳିବ ।''

ଆଉ ତୁମ ନାତି, ନାତୁଣୀ ଜିତ୍, ବେବୀ ?

ମୁଁ ତୁମକୁ କହିନି ମ । ହେଇ ଦେଖେଇବି କେତେ ଖେଳନା କିଣିଚି ଲୁଚେଇ ଲୁଚେଇ । ହେଲା, ଯାହା ଭଲ ଲାଗିବ କିଣିବା ।''

''ହୁଁ ।''

''କ'ଣ ଖାଲି 'ହୁଁ' । ତୁମେ କ'ଣ ବୁଝ ? ଜାଣିଚ, ସେମାନେ ମୋର ଏତେ ମନେ ପଡୁଛନ୍ତି ! ଏଇଠୁ ପଳେଇ ଯାଇ ସମସ୍ତଙ୍କୁ ଟିକେ ଦେଖି ଆସନ୍ତେନି । ଏତେ ଏତେ ଦିନ କୁଆଡେ ବୁଲିଲେ । ପିଲାମାନଙ୍କୁ ଦେଖିବାକୁ ଦୁଇଦିନର ପ୍ରୋଗ୍ରାମ କରି ପାରିଲନି ! ନା..ନା ଯାହା କର ପଛକେ ଜିତ୍, ବେବୀଙ୍କୁ ମୁଁ ଯେମିତି ହେଲେ ଦେଖିବାକୁ ଯିବି ।''

ଏପାଖରେ ଉତ୍ତର ନାହିଁ । ନରେଶ ବୋଧହୁଏ ଖୁବ୍ ନିଦରେ ଶୋଇଯାଇଥିଲେ । □□